
କାର୍ତ୍ତିକ ପୂର୍ଣ୍ଣିମା
ଷଷ୍ଠ ବର୍ଷ, ଷଷ୍ଠ ସଂଖ୍ୟା
ନଭେମ୍ବର, ୨୦୧୧
ଓଡ଼ିଶାର ପ୍ରଥମ ସଂପୂର୍ଣ୍ଣ ଓଡ଼ିଆ ଇ-ପତ୍ରିକା
ଆହ୍ୱାନ
ସଂପୂର୍ଣ୍ଣ ଓଡ଼ିଆ । ସଂପୂର୍ଣ୍ଣ ଉତ୍କଳୀୟତା
ପବିତ୍ର ବୋଇତ ବନ୍ଦାଣ ସଂସ୍କରଣ

ଷଷ୍ଠ ବର୍ଷ, ଷଷ୍ଠ ସଂଖ୍ୟା

ନଭେମ୍ବର, ୨୦୧୧

ଓଡ଼ିଶାର ପ୍ରଥମ ସଂପୂର୍ଣ୍ଣ ଓଡ଼ିଆ ଇ-ପତ୍ରିକା

# ଆହ୍ୱାନ

**ଆସ ଓଡ଼ିଆରେ ଲେଖିବା, ପଢ଼ିବା, ପଢ଼ାଇବା**



ପ୍ରତିଷ୍ଠାତା ଓ ସଂପାଦକ

## ଡ଼ା ଜ୍ୟୋତି ପ୍ରସାଦ ପଟ୍ଟନାୟକ

ଏମ୍.ବି.ବି.ଏସ୍, ପି.ଜି.ଡ଼ି.ଏମ୍.ସି.ଏଚ୍, ପି.ଜି.ଡ଼ି.ଏଚ୍.ଏମ୍

ଯୋଗାଯୋଗ : ବୀମା ନଗର, ଆମ୍ବପୁଆ ମୁଖ୍ୟ ରାସ୍ତା, ବ୍ରହ୍ମପୁର, ପିନ୍: ୭୬୦୦୧୦, ଓଡ଼ିଶା, ଫୋନ୍: ୯୮୬୧୯୬୨୧୬୦

ରାଜ୍ୟରେ କନ୍ୟା ଭ୍ରୂଣ ହତ୍ୟା ମାମଲା ସାମନାକୁ
ଆସୁଥିବା ସମୟରେ କନ୍ୟା ସନ୍ତାନକୁ ସମ୍ମାନର
ସହିତ ଜୀବନ ଦେଉଥିବା ମା' ମାନଙ୍କ
ଉଦ୍ଦେଶ୍ୟରେ ସସ୍ନେହ ସମର୍ପିତ...




## ପ୍ରଚ୍ଛଦ

ଚଳିତ ମାସରେ ପ୍ରକାଶିତ ଦୁଇଟି ଭ୍ରମଣ କାହାଣୀରେ ବିଶାଖାପାଟଣାର ବର୍ଣ୍ଣନା ରହିଛି, ତେଣୁ ବିଶାଖାପାଟଣାର ବିଖ୍ୟାତ କୈଳାଶଗିରି ଉପରେ ଥିବା ଶିବପାର୍ବତୀଙ୍କ ଯୁଗଳ ମୂର୍ତ୍ତୀର ଛବି ପ୍ରଚ୍ଛଦରେ ଦିଆଯାଇଛି, ଏବଂ କାର୍ତ୍ତିକ ପୂର୍ଣ୍ଣିମାରେ ପ୍ରକାଶିତ ହେଉଥିବାରୁ ବୋଇତର ଛବି ଦିଆଯାଇଛି । ଡ଼ଙ୍ଗାର ଛବି ଇଣ୍ଟରନେଟରୁ ନିଆଯାଇଛି, ଏବଂ ବିଶାଖାପାଟଣାର ଛବି ଆମର ବିଶାଖାପାଟଣା ଯାତ୍ରା ସମୟରେ ନିଆଯାଇଥିଲା ।

## ଆହ୍ୱାନ ପ୍ରକାଶନ ବିଷୟରେ ସମ୍ୟକ୍ ବିବରଣୀ

- ଆହ୍ୱାନ ଇ-ପତ୍ରିକା ଓଡ଼ିଶାରୁ ପ୍ରକାଶିତ ପ୍ରଥମ ଏବଂ ଏକମାତ୍ର ସଂପୂର୍ଣ୍ଣ ଓଡ଼ିଆରେ ପ୍ରକାଶିତ ସାହିତ୍ୟ ଇ-ପତ୍ରିକା ।
- ଏହା ପ୍ରତ୍ୟେକ ମାସର ପ୍ରଥମ ସପ୍ତାହରେ ପ୍ରକାଶିତ ହୋଇଥାଏ ।
- ବେଳେ ବେଳେ ପୂଜାପର୍ବପର୍ବାଣୀ ସମୟରେ ସମୟୋପଯୋଗୀ ବିଶେଷ ସଂସ୍କରଣ ମାନ ମଧ୍ୟ ପ୍ରକାଶିତ ହୁଏ ।
- ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାଗ ଯଥା, ଗଳ୍ପ, କବିତା, ପ୍ରବନ୍ଧ, ରମ୍ୟ ରଚନା, ଶିଶୁ ରଚନା, ଭ୍ରମଣ କାହାଣୀ ଇତ୍ୟାଦି ଏଥିରେ ପ୍ରକାଶିତ ହୁଏ
- ଏହି ପତ୍ରିକାରେ ଲେଖା ପ୍ରକାଶିତ କରିବା ପାଇଁ ନୂଆ ଓ ପୁରୁଣା ଉଭୟ ସାହିତ୍ୟକାରଙ୍କୁ ପ୍ରୋତ୍ସାହନ ଦିଆଯାଇଥାଏ ।
- ଯେହେତୁ ଏହି ପତ୍ରିକା ନିଃଶୁଳ୍କ ବିତରଣ ନିମିତ୍ତ ଉଦ୍ଦିଷ୍ଟ ତେଣୁ ଲେଖକ ଲେଖିକା ମାନଙ୍କୁ କୌଣସି ପ୍ରକାରର ପ୍ରୋତ୍ସାହନ ରାଶି ଦିଆଯାଏ ନାହିଁ ।
- ପାରିଶ୍ରମିକ ଆଶା କରୁଥିବା ଲେଖକ ଲେଖିକା ମାନେ ନିଜ ଲେଖା ବ୍ୟବସାୟିକ ପତ୍ରପତ୍ରିକାକୁ ପଠାଇ ପାରିବେ ।
- ଏହି ପତ୍ରିକା ପ୍ରତ୍ୟେକ ମାସରେ ଇଣ୍ଟରନେଟ୍‌ରେ ନିଃଶୁଳ୍କ ପଢ଼ିବା ପାଇଁ ଉପଲବ୍ଧ ହୋଇଥାଏ ।
- ପାଠକ ଚାହିଁଲେ ଏହି ପତ୍ରିକାର ଗୋଟିଏ ପ୍ରତିଲିପି ନିଜ କଂପ୍ୟୁଟରରେ ଡ଼ାଉନ୍‌ଲୋଡ୍ କରି ପାରିବେ ।
- ଏହି ପତ୍ରିକା ଉନ୍ନତି ହେତୁ ଆପଣଙ୍କ ସହାୟତା ଆମର ଏକାନ୍ତ କାମ୍ୟ ।
- ଲେଖକ ଲେଖିକା ମାନେ ନିଜ କୃତି ଆମ ନିକଟକୁ ଡ଼ାକଦ୍ୱାରା କିମ୍ବା ଇ-ମେଲ୍ ଦ୍ୱାରା ପଠାଇପାରିବେ ।
- ଡ଼ାକ ଦ୍ୱାରା ପଠାଉଥିଲେ ନିଜ ଲେଖାକୁ ଧଳା କାଗଜର ଗୋଟିଏ ପାର୍ଶ୍ୱରେ ନିର୍ଭୂଲ ହସ୍ତାକ୍ଷରରେ ଲେଖି ପଠାନ୍ତୁ, କିମ୍ବା ଟାଇପ୍ କରି ମଧ୍ୟ ପଠାନ୍ତୁ ।
- ଇ-ମେଲ୍ ଦ୍ୱାରା ପଠାଉଥିଲେ ଲେଖାକୁ ଲେଖି ସାରିବ ପରେ ସ୍କାନିଂ କରି ଆମ ଇ-ମେଲ୍ ଠିକଣାରେ ପଠାନ୍ତୁ ।
- ଆହ୍ୱାନର ପ୍ରକାଶନ ସଂପୂର୍ଣ୍ଣ ପରିବେଶ ଅନୁକୂଳ, କାରଣ ଏହାଦ୍ୱାରା କାଗଜର ବ୍ୟବହାର କମ ହୋଇଥାଏ, ଯେଉଁଥିପାଇଁ ଗଛ କାଟିବାକୁ ପଡ଼େନାହିଁ ।

ଆମକୁ ଲେଖା ପଠାଇବା ଠିକଣା : -


# ଡ଼ା ଜ୍ୟୋତି ପ୍ରସାଦ ପଟ୍ଟନାୟକ

ଏମ୍.ବି.ବି.ଏସ୍, ପିଜିଡ଼ିଏମ୍‌ସିଏଚ୍, ପିଜିଡ଼ିଏଚ୍‌ଏମ୍

ବୀମା ନଗର, ବ୍ରହ୍ମପୁର, ୭୬୦୦୧୦, ଓଡ଼ିଶା, ଫୋନ୍:- ୯୬୧୯୬୨୧୬୦ / ୯୦୪୦୯୮୫୪୬୩

ଇ-ମେଲ୍ : aahwaan@gmail.com

# ସୂଚୀପତ୍ର




# ସଂପାଦକୀୟ

ଆମେ ସବୁ ତୁଣ୍ଡକୁହା ଓଡ଼ିଆ ।

ତେଣୁ କହିବାରେ ବେଳେ ବେଳେ ଭୁଲ ହୋଇଯାଏ,

ତା'କୁ ନେଇ ଅବଶ୍ୟ ବାକ୍‌ବିତଣ୍ଡା କରିବା ପାଇଁ ଅନେକ ଅଛନ୍ତି,

ଆମର ଭୁଲକୁ ବାହାର କରିବାକୁ ଅଣୁବୀକ୍ଷଣ ଯନ୍ତ୍ର ଧରି ବସିଛନ୍ତି ।

ଉ ଆଉ ଊ ଭିତର ଫରକ ବୁଝାଇବାକୁ,

ଘଣ୍ଟା ଘଣ୍ଟା ଆମ ଆଗରେ ଭାଷଣ ଝାଡୁଛନ୍ତି ।

ଆମେ ତ ମାନୁଛୁ ଆମକୁ ଓଡ଼ିଆ ଆସେନାହିଁ ।

ଓଡ଼ିଶାରେ ସିନା ଜନ୍ମ ହେଇଛୁ,

ହେଲେ ଓଡ଼ିଆରେ କଥା ହେବା ଶୈଳୀ ପରା ଶିଖିନାହୁଁ ।

ସ୍କୁଲ ମାଷ୍ଟ୍ରେ ଯାହା ସବୁ ଥିଲେ ପଢ଼େଇ,

କଲେଜ୍ ବାରଣ୍ଡାରେ ପାଦ ଦେଉ ଦେଉ

ଡ଼ଷ୍ଟବିନ୍ ରେ ସେ ସବୁ ଦେଲୁ ଗଡ଼େଇ ।

ଚାକିରୀ ବେଉସା ଯାହା ବି ସବୁ କରିଲୁ,

ଓଡ଼ିଆକୁ ପଛରେ ରଖି ଇଂରାଜୀର ହାତ ଧରିଲୁ ।

ଏବେ ଟିଭି ଦେଖି ଦେଖି ଖଣ୍ଡି ହିନ୍ଦୀ ଶିଖି ଗଲୁଣି,

ମାଆକୁ ମମ୍ ବାପାକୁ ଡ଼୍ୟାଡ୍ କଲୁଣି,

ନମସ୍କାର ଛାଡ଼ି ଗୁଡ୍ ମର୍ଣ୍ଣିଙ୍ଗ୍ କହୁଛୁ,

ଆମକୁ ଧିକ୍କାର କଲେ ବି ସମସ୍ତେ

ମୁଣ୍ଡ ପାତି ସବୁ ସହୁଛୁ....

ଆମେ ସତରେ ଅଣ-ଓଡ଼ିଆ ହୋଇ ଯାଇଛୁ ॥

ଅନେକ ଲୋକ ଅନେକ କଥା କହୁଛନ୍ତି, ଆମ ପିଲାମାନେ ଓଡ଼ିଆ ଭୁଲିଗଲେଣି ବୋଲି କାନ୍ଦୁଛନ୍ତି, କିନ୍ତୁ କଣ କରାଯାଇ ପାରିବ ତାହା କେହି କେବେ ଚିନ୍ତା କରି ଦେଖିଛନ୍ତି କି ? ପ୍ରଶ୍ନ କରିବା ସହଜ, ହେଲେ ସେହି ପ୍ରଶ୍ନର ଉତ୍ତର ନିଜେ ଖୋଜିଆଣିବା କେତେ ଯେ କଷ୍ଟ ତାହା ସେହି ଭଦ୍ରବ୍ୟକ୍ତି ମାନେ ହିଁ କହି ପାରିବେ । ଆମ ପିଲେ ଓଡ଼ିଆରେ ପଢ଼ିବା ଲେଖିବା କାହିଁକି ଶିଖୁନାହାନ୍ତି ! ଓଡ଼ିଶାରେ ପର୍ଯ୍ୟାପ୍ତ ଚାକିରୀର ବ୍ୟବସ୍ଥା ନାହିଁ, ଆଉ ଯେଉଁ ସବୁ ଚାକିରୀ ରହିଛି ସେଠାରେ ଓଡ଼ିଆ ଭାଷାକୁ ପ୍ରାଧାନ୍ୟ ଦିଆଯାଇନାହିଁ । ଆମ ପିଲାମାନେ ଓଡ଼ିଶା ବାହାରକୁ ଯିବାପାଇଁ ଏକ ରକମ ବାଧ୍ୟ ହେଉଛନ୍ତି, ତେଣୁ ଓଡ଼ିଆ ଛାଡ଼ି ଅଣ-ଓଡ଼ିଆ ଶିଖୁଛନ୍ତି । ଏବେ ଆମ ସରକାରଙ୍କ ଘୋଷଣା ଚଳିତ ମାସରେ ଆମ ରାଜ୍ୟ ଓ ଭାଷା ପାଇଁ ଏକ ଅନନ୍ୟ ଖୁଶିଖବର୍ ଆଣିଦେଇଚି, ଓଡ଼ିଆ ଭାଷା ଓ ଓଡ଼ିଶାର ଉଚ୍ଚାରଣଗତ ଅସମାନତାକୁ ଦୂରେଇବା ପାଇଁ ଭାରତୀୟ ସଂସଦରେ ପ୍ରସ୍ତୁତ ଚିଠା ଫଳରେ ଏବେ ବିଶ୍ୱବ୍ୟାପୀ ସମସ୍ତେ ଆମ ଭାଷାକୁ ଓଡ଼ିଆ ବୋଲି ହିଁ କହିବେ, ଏବଂ ଏହା ଫଳରେ ଇଂରାଜୀ ଭାଷାରେ ଲେଖାଯାଉଥିବା ଓରିୟା ଓ ହିନ୍ଦୀରେ କୁହାଯାଉଥିବା ଉଡ଼ିୟା ସବୁ ଏବେ କେବଳ ଓଡ଼ିଆ ବୋଲି ହିଁ କୁହାଯିବ । ଅବଶ୍ୟ ଲୋକମାନେ ଏହାକୁ କେତେ ଶୀଘ୍ର କହିବେ ବା କହିବାକୁ ଚେଷ୍ଟା କରିବା ତାହା ଅଲଗା କଥା । ଆମ ଲୋକମାନେ ଏହାକୁ ନେଇ କେତେ ସଚେତନ ତାହା ଦେଖିବାକୁ ପଡ଼ିବ । ଇଚ୍ଛାଥାଉ ବା ନଥାଉ ଓଡ଼ିଆରେ ହିଁ ପଢ଼ିବା ଲେଖିବାକୁ ବାଧ୍ୟତା ମୂଳକ କଲେ ଯାଇ ହିଁ ଲୋକମାନେ ଓଡ଼ିଆରେ ଲେଖିବେ ପଢ଼ିବେ, ନହେଲେ ସ୍କୁଲ୍ ପାଠ୍ୟକ୍ରମରେ ଏହା କେବଳ ଏକସ୍ଟ୍ରା ଅପ୍ସନାଲ୍ ବିଷୟ ହୋଇ ରହିଯିବ ସିନା !!!

ବର୍ତ୍ତମାନ ଚିନ୍ତା କରିଦେଖିବା ଆମ ବାସ୍ତବିକ ଜୀବନକୁ ପ୍ରଭାବିତ କରୁଥିବା, ସାମାଜିକ ବନ୍ଧୁତ୍ୱର ୱେବ୍‌ସାଇଟ୍ ମାନଙ୍କ ବିଷୟରେ...

ସୋସିଆଲ୍ ନେଟ୍‌ୱାର୍କିଂ ୱେବ୍‌ସାଇଟ୍ ମାନଙ୍କ ଦୟାରୁ ଆମେ ଯେତେ ସୋସିଆଲ୍ (ସାମାଜିକ) ହୋଇ ପାରିଛେ, ଅନ୍ତତଃ ବିଗତ କେଇ ଦଶନ୍ଧିରେ ଏଇମିତିକା ପରିବର୍ତ୍ତନ ଆମ ଜୀବନରେ ପରିଲକ୍ଷିତ ହୋଇନଥିଲା । ଫେସ୍‌ବୁକର ପ୍ରତିଷ୍ଠାତା ମାର୍କ ଜୁକରବର୍ଗ କହିଛନ୍ତି ଯେ ପୃଥିବୀ ଉପରେ ବସବାସ କରୁଥିବା ସମସ୍ତ ବ୍ୟକ୍ତିଙ୍କୁ ସେ ଫେସବୁକରେ

ଦେଖିବାକୁ ଚାହାନ୍ତି, ଅପରନ୍ତୁ ଅନ୍ୟମାନେ ଦାବୀ କରିଛନ୍ତି ଯେ ଯଦି କୌଣସି ବ୍ୟକ୍ତିର ଫେସ୍‌ବୁକରେ ସଦସ୍ୟତା ନାହିଁ ମାନେ ସେ ଆମ ଗ୍ରହର ଜୀବ ନୁହନ୍ତି । ସୋସିଆଲ୍ ନେଟଓ୍ୱାର୍କିଂ ସାଇଟର ପ୍ରାବଲ୍ୟତାରୁ କିଛି ଲାଭ ମିଳୁ କି ନ ମିଳୁ, ଅନ୍ତତଃ ଆମ ମଧ୍ୟରେ ବନ୍ଧୁ ସହୃଦୟତାର ଉଦ୍‌ଭବ ହୋଇଛି, ଏହା ସମସ୍ତେ ମାନିବେ । ଅଜଣା ଅଶୁଣା ଲୋକମାନେ ପରସ୍ପର ସହ ବନ୍ଧୁତ୍ୱରେ ଏମିତି ବାନ୍ଧି ହେଇ ଯାଉଛନ୍ତି ଯେ ନିଜ ଘରେ ଓ ପରିଜନଙ୍କ ପାଖରେ ଆମେ ଯେତେ ସାମାଜିକ ହୋଇ ପାରୁନାହୁଁ ଅନଲାଇନ୍ ଦୁନିଆରେ ଆମେ ବରଂ ତା'ଠୁ ଅଧିକ ସ୍ନେହ ଓ ଶ୍ରଦ୍ଧା ବାଣ୍ଟି ବୁଲୁଛୁ । କାହାକୁ ମାଉସୀ, କାହାକୁ ଭଉଣୀ, ଭାଇ, ଦାଦା, କାକା କରି ଆମେ ସୃଷ୍ଟି କରିଛୁ ଏକ ନୂତନ ଦୁନିଆ ।

ଏହି ଦୁନିଆ ଆମ ପାରିପାର୍ଶ୍ୱିକ ଦୁନିଆଠାରେ ଭିନ୍ନ ନୁହେଁ, ଏଠାରେ ମଧ୍ୟ ପରସ୍ପର ପ୍ରତି ହିଂସା, ଦ୍ୱେଷ, ଘୃଣା ଆଦି ଦେଖାଦେଉଚି, ବେଳେ ବେଳେ ଜଣେ ବ୍ୟକ୍ତିର କର୍ମ ଯୋଗୁଁ ଅନେକ ବ୍ୟକ୍ତି ବ୍ୟଥିତ ଅନୁଭବ କରୁଛନ୍ତି । ସେ ଯା'ହେଉ, ଏହା ଦ୍ୱାରା ପ୍ରତ୍ୟେକ ବ୍ୟକ୍ତିକୁ ଶୁଣିବା ଓ ବୁଝିବା ପାଇଁ ଅନେକ ବ୍ୟକ୍ତି ଯେ ମିଳିଯାଉଛନ୍ତି ତାହା ଅତ୍ୟନ୍ତ ଆନନ୍ଦର କଥା ।

ସାହିତ୍ୟର ଦୁନିଆ ଏହି ଦୁନିଆରେ ସର୍ବାଧିକ ଗତିଶୀଳ ହୋଇଥିବା ଆମେ ଅନୁଭବ କରିଛୁ । ପ୍ରୟୋଗାତ୍ମକ ଭାବରେ ଆହ୍ୱାନ ଓଡ଼ିଆ ପରିବାର ଦ୍ୱାରା ପ୍ରଥମ ଥର କଥା ଓ କବିତା ନାମକ ଏକ ଗ୍ରୁପ୍ ତିଆରି କରିବାପରେ, ଏବେ ସେଥିରେ ଦେଢ ଶହ ସଦସ୍ୟ ସଦସ୍ୟା ରହିବା ସହିତ ପ୍ରାୟ ପ୍ରତିଦିନ ଏକାଧିକ କବିତା ପ୍ରକାଶିତ ହେଉଥିବା ଦେଖାଯାଉଛି, ଏବଂ ଏହା ସହ ପ୍ରତ୍ୟେକ କବିତା ଉପରେ ଅନ୍ୟ ଲେଖକ ଓ କବି ମାନଙ୍କର ମନ୍ତବ୍ୟ କବିତା ମାଧ୍ୟମରେ ବାହାର ହେଉଥିବାରୁ ଏହା ଜନାଦୃତ ହୋଇ ପାରିଛି । ବିଗତ ଦୁଇ ମାସରେ ଏହି ଗ୍ରୁପ୍ ରେ ଅନ୍ତତଃ ପାଞ୍ଚ ଶହରୁ ଅଧିକ କବିତା ପ୍ରକାଶ ହୋଇ ସାରିଛି ।

ଚଳିତ ମାସରେ ଆହ୍ୱାନରେ ପ୍ରକାଶିତ ହେଉଥିବା ସମସ୍ତ କବିତା ପାଇଁ କବିମାନଙ୍କୁ ଧନ୍ୟବାଦ ଦେବାକୁ ହେବ କାରଣ ଅଧିକାଂଶ କବି ନୂଆ ଏବଂ ତଥାପି ସେମାନେ ଲେଖିବା ପାଇଁ ପ୍ରଚେଷ୍ଟା କରିଛନ୍ତି ଏବଂ ତାହା ସମସ୍ତଙ୍କୁ ଭଲ ଲାଗିବ ନିଶ୍ଚୟ ।

ଶେଷରେ ପୁଣିଥରେ ଜଣାଇ ଦେବାକୁ ଚାହୁଁଛି, ଯେ ଏହି ପତ୍ରିକା ଏକ ଉତ୍କୃଷ୍ଟ ଓଡ଼ିଆ ପତ୍ରିକା ଭାବରେ ଔଜ୍ଜ୍ୱଲ୍ୟମାନ ହେବାପାଇଁ ଯେଉଁ ବନ୍ଧୁମାନେ ଆମକୁ ସହାୟତା କରୁଛନ୍ତି ଏବଂ କରି ଆସିଛନ୍ତି ସେମାନେ ସମସ୍ତେ ଆମର ଚୀର ନମସ୍ୟ, ଆମେ ଓଡ଼ିଆଭାଷା ବିଷାରଦ ନୋହୁଁ, ତେଣୁ ଏହି ପତ୍ରିକାରେ ସ୍ଥାନେ ସ୍ଥାନେ ତ୍ରୁଟି ଦେଖା ଦେବା ସ୍ୱାଭାବିକ । ଭୁଲ ଥିଲେ ତାକୁ ନିଜେ ଠିକ୍ କରି ପଢିନେବେ, ଏବଂ ଯଦି ଚାହୁଁଥାନ୍ତି ଯେ ଏହି ପତ୍ରିକା ଉନ୍ନତି କରେ ତେବେ ଆମକୁ ଇ-ମେଲ୍ ଦ୍ୱାରା ଜଣାଇ ଦେବେ ।

ଆହ୍ୱାନ ପତ୍ରିକାର ନଭେମ୍ବର ମାସର ସଂସ୍କରଣ ଆପଣ ମାନଙ୍କୁ ଭଲ ଲାଗିବ ବୋଲି ଆଶା । ଆପଣଙ୍କ ମତାମତ ନିଶ୍ଚୟ ଜଣାଇବେ ।

ଧନ୍ୟବାଦ

## ଡ଼ା ଜ୍ୟୋତି ପ୍ରସାଦ ପଟ୍ଟନାୟକ

ଏମ୍.ବି.ବି.ଏସ୍, ପିଜିଡ଼ିଏମ୍ସିଏଚ୍, ପିଜିଡ଼ିଏଚ୍ଏମ୍

ପ୍ରତିଷ୍ଠାତା, ସଂପାଦକ, ୱେବ୍ ମାଷ୍ଟର୍
ଆହ୍ୱାନ ଓଡ଼ିଆ ପରିବାର

Katha o Kabita Group on Facebook

https://www.facebook.com/groups/kathaokabita

Aahwaan Group on Facebook

https://www.facebook.com/groups/aahwaan

Aahwaan Odia Paribar on Facebook

https://www.facebook.com/odiaparibar



# ଲକ୍ଷ୍ମୀର ଅଭିସାର

ମନୋଜ ଦାସ

ଯେତେବେଳେ ସହରତଳି ବସତିଟିର ଅନତିବୃହତ୍ ଗୃହଶ୍ରେଣୀ, ବୃକ୍ଷଲତା ଓ ପଥପ୍ରାନ୍ତକୁ ଆୟତ୍ତ କରି ଦ୍ୱିପ୍ରହର ବିରାଜମାନ କରେ, ବିଅଗତ-ଯୁଗର ଅବଧାନଙ୍କ ଆବିର୍ଭାବରେ ମୁଖରିତ ଚାଟଶାଳୀ ନିସ୍ତବ୍ଧ ହେଲା ପ୍ରାୟ ହୁଏ ବସତିଟିର ଅବସ୍ଥା, ସେତିକିବେଳେ ମନ୍ଦିରର ଦକ୍ଷିଣପାର୍ଶ୍ୱସ୍ଥ କୃଷ୍ଣଚୁଡ଼ା ଗଛର ଛାଇ ତଳୁ ଉଙ୍କିମାରେ ଲକ୍ଷ୍ମୀ । ବଡ଼ ଇଚ୍ଛା ଥରେ ମନ୍ଦିର ପ୍ରାଙ୍ଗଣ ଭିତରକୁ ଆସିଯିବା ପାଇଁ - ବଡ଼ ଇଚ୍ଛା ଥରେ ମନ୍ଦିର ଭିତରକୁ ପଶିଯିବା ପାଇଁ । କିନ୍ତୁ ବଡ଼ ଡର ବୁଢ଼ା ପୂଜାରୀଙ୍କୁ । ସେ ପଣ୍ଡିତ, ଅତଏବ ଦେଖିବା ମାତ୍ରେ ପଚାରିଦେବ ମାନସାଙ୍କ, ନତୁବା ଗୋଟିଏ ତାତ୍ପର୍ଯ୍ୟପୂର୍ଣ୍ଣ ସାଧୁଶବ୍ଦର ଅର୍ଥ । ସର୍ବୋପରି, ଠାକୁରଙ୍କ ନିଜ ଲୋକ ହିସାବରେ ମନ୍ଦିର ପାଖରୁ ପିଲାମାନଙ୍କୁ ତଡ଼ିବା ତାଙ୍କର ଅନ୍ୟତମ କର୍ତ୍ତବ୍ୟ ।

ଅନେକ ଦ୍ୱିପହର ପରେ ଆଜି ପୂଜାରୀ ପଣ୍ଡିତ ଶୋଇପଡ଼ିଛନ୍ତି । ଘୁଙ୍ଗୁଡ଼ି ବି ମାରୁଛନ୍ତି । ଲକ୍ଷ୍ମୀ ଅତି ସନ୍ତର୍ପଣରେ ତାଙ୍କୁ ଅତିକ୍ରମ କରିଗଲା । ତା'ପରେ ଅଭ୍ୟନ୍ତରରେ ପ୍ରବେଶ କରି ସିଧା ଠାକୁରଙ୍କ ଆଗରେ ଯାଇ ବସିପଡ଼ି ମୁଣ୍ଡିଆଟିଏ ମାରିଲା । ଦୁଇ ମିନିଟ୍ ମୁଗ୍ଧ ମଧୁର ନୟନରେ ମୂର୍ତ୍ତି ଓ ତାଙ୍କ ବେଶଭୂଷାକୁ ନିରୀକ୍ଷଣ କରିସାରି କହିଲା :

"ମୋତେ ଚିହ୍ନିପାରୁଛ ତ? ମୁଁ ଲକ୍ଷ୍ମୀ । ଓଃ, ଭଗବାନ୍ ! ମାସଟିଏ ଧରି ସବୁଦିନ ତୁମ ପାହକୁ ଆସିବାକୁ ଚେଷ୍ଟା କରୁଛି, କିନ୍ତୁ ପଣ୍ଡିତ ବାଟ ଓଗାଳି ବସୁଛି । ଆଜି ବୁଢ଼ା ଶୋଇପଡ଼ିଛି । ହେ ଭଗବାନ୍, ପଣ୍ଡିତ କ'ଣ ରାତିରେ ବି ଏମିତି ଘୁଙ୍ଗୁଡ଼ି ମାରେ ? ତୁମର ନିଦ କେମିତି ହୁଏ ପ୍ରଭୂ? ହି ହି ! ଆମ ସ୍କୁଲ ପଣ୍ଡିତ ଏମିତି ଘୁଙ୍ଗୁଡ଼ି ମାରନ୍ତି? ମୁଁ ଯଦି ଘୁଙ୍ଗୁଡ଼ି ମାରିବାକୁ ଶିଖିବି, ତେବେ ମୁଁ ପଣ୍ଡିତ ହୋଇପାରିବି ? ନା ନା ଠାକୁର, ତମେ ଚଟାପଟ୍ ଏମିତି ବର ଦେଇ ବସିବନିଟି! ବରଂ ମୋର ପଣ୍ଡିତ ହେବା ନ ହେଉ, ମୁଁ ଯେମିତି ଘୁଙ୍ଗୁଡ଼ି ନ ମାରେ ।

"ହଁ, ବରଟିଏ ମାଗିବି ଏକା - ସେ କଥା ପରେ କହିବି । ଆଚ୍ଛା, ମାସକତଳେ ରାତିରେ ସ୍ୱପ୍ନରେ ମୋତେ କ'ଣ କହିଲ - ତୁମ ସହିତ ଖେଳୁ ନାହିଁ କାହିଁକି; ତୁମ କଥା ଭୁଲିଗଲି - ଏମିତି କିଛି କହିଲ ଯେମିତି, ନୁହେଁ? ତହିଁ ପରଠାରୁ ତ ତୁମ ପାଖକୁ ଆସିବାପାଇଁ ଚେଷ୍ଟା କରୁଛି - ପାରୁନାହିଁ ।

"ଆରେ ବାପ୍‌ରେ! ତମକୁ ଏ କଦଳୀକାନ୍ଦି କିଏ ଦେଇଛି? ଉପର ଦୁଇ ଫେଣାଯାକ୍ ଏକାଥରେ ପାଚିଲାଣି - ତମେ ଖାଇବ କେମିତି? ସାବଧାନ ଠାକୁର, ସବୁ ଏକା ଥରକେ ଖାଇବ ନାହିଁ ଟି - ଦିହ ଖରାପ ହେବ । ଏକ୍, ଦୁଇ, ତିନି, ଚାରି, ପାଞ୍ଚ... ଚବିଶିଟା ପାଚିଛି । ତୁମେ ଦୈନିକ ଦୁଇଟା... ଆଚ୍ଛା ନ ହେଲେ ଚାରିଟା କରି ଖାଇବ - ହେଲା? ତାହା ହେଲେ ଚବିଶଟା ଖାଇବାକୁ ଚାରିଦିନ ନା ପାଞ୍ଚଦିନ - ଏଇ ହେଲା ମୁସ୍କିଲ୍, ଠାକୁର ! ମୋତେ ଅଙ୍କ ମୋଟେ ଆସୁନାହିଁ । ହଁ, କଥାଟାଏ କହୁଥିଲି... ତୁମେ ଗୋଟାଏ ଯାଦୁ କରନ୍ତ ନାହିଁ? ଦିନେ ରାତିରେ ସଭିଏଁ ଶୋଇଥାଆନ୍ତେ, ସେତିକିବେଳେ ତୁମେ ଗୋଟାଏ କିଛି କରିଦିଅନ୍ତ, ସକାଳେ ଉଠିଲା ବେଳକୁ ସମସ୍ତେ ଅଙ୍କ ଭୁଲି ଯାଆନ୍ତେ... ମାନେ ଅଙ୍କ ଖାଲି କଷିବାକୁ ଭୁଲିଯା'ନ୍ତେ ବୋଲି ମୁଁ କହୁନାହିଁ, ଅଙ୍କ ବୋଲି ଗୋଟାଏ ବିଷୟ ଅଛି, ପୂରା ସେ କଥାଟା ହିଁ ସଭିଏଁ ଭୁଲିଯାଆନ୍ତେ ।"

"ନା, ନା, ତୁମେ ହଠାତ୍ ବର ଦେଇ ବସିବ ନାହିଁ ଠାକୁର ! ହୁଏତ ଅଙ୍କର କିଛି ଭଲ ଗୁଣ ଥିବ, ସେ କଥା ବୁଝିବାର ବୟସ ମୋର ହୋଇନାହିଁ... ନୁହେଁ?"

"ହଁ, ବର ଯଦି ଦେବ ଠାକୁର ତେବେ ଏଇ ବର ଦିଅ, ଲୋକେ ଯେମିତି ଧୀରଭାବରେ ତୁମକୁ ଭକ୍ତି ଜଣାଇବେ । ସେ ଦିନ ଶେଷ ରାତିରେ ତୁମେ ସ୍ୱପ୍ନରେ କ'ଣ କହୁଥିଲ - ସେତିକିବେଳେ ମୋ ନିଦ ଭାଙ୍ଗିଗଲା । କାରଣ ତମ ମନ୍ଦିରରୁ କଳାଗାଉଣାରେ ସ୍ତବ ବାଜିଲା । କଳାଗାଉଣା ଭଲ, କିନ୍ତୁ ଏଇ ଯନ୍ତ୍ର ଚୁଙ୍ଗା ଲଗାଇ ଏଡ଼େ ରଡ଼ି କରି ଗୀତ ବୋଲୁଛନ୍ତି, ସେଇଟା କ'ଣ ଭଲ ଠାକୁର? ଆମ ଘର ପଛ ପଟେ ଆଉ ଗୋଟାଏ କୋଠା ଅଛି । ସେଇଟାକୁ ଅନ୍ୟ ଗୋଟାଏ ଧର୍ମର ଲୋକ ଯାଆନ୍ତି । ସେଠାରେ ବି ଚୁଙ୍ଗା ଲଗାଇ ସେମାନେ ଭଗବାନଙ୍କୁ ଡ଼ାକନ୍ତି । ଆଚ୍ଛା, ଏଡ଼େ ଗର୍ଜନ କରି ତୁମ ପ୍ରାର୍ଥନା ନ ବୋଲିଲେ ତୁମେ କ'ଣ ଶୁଣିପାର ନାହିଁ ? ମୁଁ ସେଦିନ ବୋଉକୁ ପଚାରିଲି,

"କହିଲୁ ବୋଉ, ଧ୍ରୁବ ପ୍ରହଲ୍ଲାଦ କ'ଣ ଯନ୍ତ୍ର ଚୁଙ୍ଗା ଲଗାଇ ଭଗବାନ ସ୍ତବ ଗାଉଥିଲେ?" ବୋଉ ଭାବିଚିନ୍ତି ନାହିଁ କଲା। ବୋଉ ତ ସବୁବେଳେ ଠିକ୍‌କଥା କହେ, ନୁହେଁ? ତା'ଛଡ଼ା ମୁଁ ତ ଏଡ଼େ ଆସ୍ତେ କଥା କହୁଛି - ଅଥଚ ତୁମେ ବେଶ୍ ଶୁଣିପାରୁଛ ଦେଖୁଛି - ତେବେ?"

"ତେବେ ଭଗବାନ୍, ମୁଁ ଯଦି କିଛି ଭୁଲ୍ କହୁଥିଲି, ତୁମେ କିଛି ଭାବିବ ନାହିଁ। ତୁମକୁ ଯଦି ବଡ଼ ପାଟି ସୁଖ ଲାଗୁଥିବ, ତେବେ ମୋ' କଥାରେ ଯନ୍ତ୍ରଚୁଙ୍ଗା ଉଠାଇଦେବା ଦରକାର ନାହିଁ। ସତ କଥା କହିବି? ମୁଁ ବଡ଼ ଡ଼ରକୁଳୀ। ଚିତ୍କାର ଶୁଣିଲେ ମୋ' ଛାତି ଭିତରେ ହଠାତ୍ ଛାନିଆଁ ପଶିଯାଏ। ଆଉ ମୋ'ବାପା ବି ବୋଧହୁଏ ମୋହରି ଭଳି। ସେଦିନ ବିଚାରାକୁ ଜର ହୋଇଥିଲା। ଗୋଟିଏ କ'ଣ ଉତ୍ସବ ପାଇଁ ପଡ଼ିଶାଘରେ ସାରାଦିନ ଯନ୍ତ୍ରଚୁଙ୍ଗାରେ ଗୀତ ବାଜିଲା। ବାପା ବିଚାରା କେଡ଼େ ଛଟପଟ ନହେଲା ! ମୋ' ହାତକୁ ନେଇ ବାରମ୍ବାର ତା' କାନ ଦୁଇଟିରେ ଚାପି ଧରୁଥାଏ। ବାପାକୁ ଆଉ ମୋତେ ତୁମେ ଆଉ ଟିକେ ସାହାସୀ କରିଦିଅ ପ୍ରଭୁ!"

"ଆଚ୍ଛା ଭଗବାନ୍, ବାପାକୁ କିଛି ଟଙ୍କା କରାଇ ଦିଅନ୍ତ ନାହିଁ? ସେଦିନ ମୁଁ ବାପାକୁ କହିଲି, ମୋର ଗୋଟିଏ ଫ୍ରକ୍ ଦରକାର। ବାପା ବୋଉକୁ କହିଲା - ମୋ ଝିଅ କେବେ କିଛି ମାଗେନାହିଁ - ଆଜି ମୁଁ ତାକୁ ଜରୁର ଫ୍ରକ୍ କିଣିଦେବି।"

"ବୋଉ ପ୍ରାୟ କୁଆଡ଼େ ବାହାରେ ନାହିଁ। ବହୁଦିନ ପରେ ସେ ଦିନ ସେ ମୋରେ ଧରି ବାପା ସହିତ ବାହାରିଲା - ମୋତେ ଫ୍ରକ୍ କିଣିଦେବ ଓ ଟିକିଏ ବୁଲି ଆସିବ। ଭଗବାନ୍! ଆମେ ଠିକ୍ ଘରୁ ବାହାରିଛୁ, ଗୋଟାଏ ଡ଼େଙ୍ଗା, ମୋଟା ଭୟଙ୍କର ନିଶୁଆ ମଣିଷ ଆସି ପହଞ୍ଚିଗଲା। ବାପା ଯେତିକି ଟଙ୍କା ଧରି ବାହାରିଥିଲା, ଗୋଟାଏ ନିଃଶ୍ୱାସ ପକାଇ ସେତକ ସମୁଦାୟ ତାକୁ ଦେଇଦେଲା। କଥା କ'ଣ କି, ବାପା କିଛି ଟଙ୍କା କରଜ କରିଛି। ସାତ ଦିନରେ ସେ ଭୟଙ୍କର ଲୋକ ଗୋଟାଏ ଠେଙ୍ଗା ଧରି ଆସି ସୁଧ ନେଇଯାଏ। ବାପା କହୁଥିଲା, ଲୋକଟା ଯେତିକି ଟଙ୍କା ଦେଇଥିଲା ତା'ର ଦେଢ଼ଗୁଣ ସୁଧ ନେଇ ସାରିଲାଣି। ଆଚ୍ଛା, ସେ ସେତିକିରେ ସନ୍ତୁଷ୍ଟ ହେବା ଉଚିତ ନୁହେଁ?"

"ଛାଡ଼... ହଁ, ମୁଁ ବାପାକୁ କହିଦେଇଛି, ବାପା, ତୁ ଯଦି ୟା'ପରେ ପୁଣି ଟଙ୍କା

କରଜ କରିବୁ, ତେବେ ଆଉ ଟିକିଏ ଗେଡ଼ା ଲୋକ ଦେଖି, ଆଉ ଯା'ର ନିଶ ଓ ଠେଙ୍ଗା ସାନ ହୋଇଥିବ ତା'ଠୁଁ କରଜ କରିବୁ।"

"ଛାଡ଼... ତେବେ ଲୋକଟା ଟଙ୍କା ତକ ନେଇଯିବା ଫଳରେ ଆମେ ସେଦିନ ଆଉ ବଜାରକୁ ଗଲୁନାହିଁ। ମୁଁ ବୋଉକୁ କହିଲି, "ବୋଉଲୋ! ତୋର ଖଣ୍ଡିଏ ପୁରୁଣା ରଙ୍ଗୀନ୍ ଶାଢ଼ୀ କାହିଁ କେଉଁ ଦିନରୁ ବାକ୍ସରେ ସାଇତା ହୋଇ ରହିଛି। ତୁ ତ ତାକୁ କେବେ ବ୍ୟବହାର୍ କରୁନା। କଥା କ'ଣ କି, ତୁ ନିଜେ ସିଲେଇ କରି ସେଇ ଶାଢ଼ିଟାରେ ଗୋଟାଏ ଫ୍ରକ୍ କରିଦେବୁ, ମୁଁ ଏଇଆ ଚାହୁଁଥିଲି। ବଜାର ଫ୍ରକ୍ ଦରକାର ନଥିଲା।"

"ତୁମେ ତ ଜାଣିଥିବ ଭଗବାନ୍, ମୁଁ ବୋଉକୁ ଏତକ ମିଛ କଥା କହିଥିଲି। ଆମ ସାହି-ବଜାରରେ ମୁଁ ଗୋଟାଏ ରଙ୍ଗୀନ୍ ଫ୍ରକ୍ ଦେଖିଥିଲି, ଆଉ ସେଇଟାକୁ ପିନ୍ଧିବାକୁ ମନ ବଳାଇଥିଲି।"

"ବୋଉ ସେଇଦିନ ସନ୍ଧ୍ୟାରେ ମୋ ପାଇଁ ତା' ଶାଢ଼ିରେ ଫ୍ରକ୍ ତିଆରି କରିବାକୁ ବସିଲା। କିନ୍ତୁ ମୁଁ ଦେଖିଲି, ସେ କାନ୍ଦୁଛି। ବୋଉକୁ ଆଜିଯାଏ ଆଉ ଥରେ ମାତ୍ର ମୁଁ କାନ୍ଦିବାର ଦେଖିଛି - ଯେଉଁଥର ବାପା ଜ୍ୱରରେ ପଡ଼ିଥିଲା, ସେଇ ଭୟଙ୍କର ଲୋକଟି ସୁଧ ନେବାକୁ ଆସି କବାଟରେ ଠେଙ୍ଗା ବାଡ଼େଇବାରୁ ବୋଉ ଯାଇ କବାଟ ଖୋଲି କହିଲା, ବାପା ଦୂରକୁ ଯାଇଛି, ସାତ ଦିନ ପରେ ଫେରିବ। ପରେ ମୁଁ ବୋଉକୁ ଚୁପି ଚୁପି କହିଲି, "ବୋଉ ଲୋ, ତୁ ପରା କହୁଥିଲୁ ମିଛ କହିବା ଖରାପ - ତୁ ଫେର୍ କେମିତି ମିଛ କହିଲୁ?" ବୋଉ କହିଲା, "ମିଛ କହିବା ନିଶ୍ଚୟ ଖରାପ। ଅଭାବ ଅସୁବିଧାରେ ପଡ଼ି ମୁଁ ମିଛ କହିଛି। ଖରାପ କାମ କରିଛି।" ବୋଉ ତା'ପରେ ମୋତେ କୋଳକୁ ନେଇ କହିଲା, "କିନ୍ତୁ ତୁ ମୋଠାରୁ ଭଲ ମଣିଷ ହେବୁ। ଅଭାବ ଅସୁବିଧାରେ ପଡ଼ିଲେ ବି ମିଛ କହିବୁ ନାହିଁ।"

"ଠାକୁର, କିଛି ସମୟ ପରେ ମୁଁ ଦେଖିଲି ବୋଉ ଲୁଚାଇ କାନ୍ଦୁଛି। ସେ ମୁହୂର୍ତ୍ତରେ ମୁଁ କ'ଣ ବୁଝିଲି ଜାଣ? ମୋ' ବୋଉ ମିଛ କହିଥାଇପାରେ, ସେ କିନ୍ତୁ ମିଛେଇ ନୁହଁ। ସାରା ପୃଥିବୀ ମିଥ୍ୟାବାଦୀ ହୋଇପାରେ, ମୋ' ବୋଉ କିନ୍ତୁ ନୁହେଁ। ସେ ସାରା ପୃଥିବୀ ଉପରେ।"

"ଆଉ ଠାକୁର, ମୁଁ ଯେ ବୋଉକୁ ଫ୍ରକ୍ ବିଷୟରେ ମିଛ କଥା କହିଲି, ସେଇଟା ବି ମିଛ କହିବା ଉଦ୍ଦେଶ୍ୟରେ ନୁହେଁ। ତୁମେ ତ ଏ କଥା ନିଶ୍ଚୟ ବୁଝୁଛ, ନୁହେଁ? ତଥାପି ଭୁଲ ହୋଇଥିଲେ ତୁମେ ମୋତେ କ୍ଷମା କରିବ, ଆଉ ବୋଉ କୁ ବି। ତୁମେ କେଡ଼େ ଭଲ, ଭଗବାନ।"

"ତେବେ ଭଗବାନ୍, ଯଦି ବାପାକୁ କିଛି ଟଙ୍କା କରାଇଦେବା ପାଇଁ ତୁମକୁ ଅସୁବିଧାରେ ପଡ଼ିବାକୁ ହେବ। ତେବେ କିଛି କରିବା ଦର୍କାର ନାହିଁ।"

"ଛାଡ଼ ଠାକୁର, ତୁମକୁ ବହୁତ କଥା କହିଲିଣି। ଅଥଚ ଅସଲ କଥା କହିନାହିଁ। ମୁଁ ଏଡ଼ିକି ମୂର୍ଖ, ସେଦିନ ସ୍ୱପ୍ନରେ ତୁମକୁ ଦେଖିଲି, କେତେ ଖୁସି ହେଲି; କିନ୍ତୁ ତୁମେ କ'ଣ କହିଲ ବୁଝିପାରିଲି ନାହିଁ। ତୁମେ ଆଉ ଥରେ ତୁମ ସୁବିଧା ଅନୁସାରେ ମୋରେ ଥରେ ସବୁକଥା ସ୍ୱପ୍ନରେ କହିବ - ଏତିକି ବର ମାଗୁଥିଲି। ଆଉ ତମେ ଯଦି ପଣ୍ଡିତଙ୍କୁ ଏମିତି ଟିକିଏ ଟିକିଏ ଖରାବେଳେ ଶୁଆଇପକାନ୍ତ ମୁଁ କେଡ଼େ ଖୁସିରେ ଆସନ୍ତି।

"ହେ ଭଗବାନ୍! ପଣ୍ଡିତଙ୍କ ଘୁଙ୍ଗୁଡ଼ି ଆଉ କାହିଁ ଶୁଭୁନାହିଁ! ହୁଏତ ଉଠିପଡ଼ିବେ। ଆଜି ତେବେ ଯାଏଁ। ହଁ - ତୁମେ ସବୁ କଦଳି ଏକାଥରକେ ଖାଇଦେବ ନାହିଁ ଟି । ମନେ ରହିବ ତ? ମୁଁ ନେବି ଦୁଇଟା? କାହିଁକି? ନାହିଁ, ନାହିଁ। ନେବାକୁ ହେବ? ଆଚ୍ଛା ତେବେ..."

ଲକ୍ଷ୍ମୀ କଦଳୀ ଦୁଇଟା ଛିଡ଼ାଇଲା ଓ ଠାକୁରଙ୍କୁ ପ୍ରଣାମ କରି ଦ୍ୱାର ପର୍ଯ୍ୟନ୍ତ ଆସିଲା।

ବାହାରେ ପ୍ରଖର ଦିବାଲୋକ। ମୁହୂର୍ତ୍ତକ ପାଇଁ ବିସ୍ମୃତ ହୋଇଥିଲା ସମୟଜ୍ଞାନ, ବିସ୍ମୃତ ହୋଇଥିଲା ଏଇଟା ଦିନ କି ରାତି।

ହଠାତ୍ ଏକ ପ୍ରଚଣ୍ଡ କଣ୍ଠ ତାକୁ ହତଚକିତ କଲା - "ଦିନ ଦି'ପ୍ରହରରେ ଠାକୁରଙ୍କ ପାଖରୁ ଚୋରି? ଏଡ଼େ ସାହାସ?"

ଖେଦି ଆସୁଥିଲେ ପଣ୍ଡିତେ । ଲକ୍ଷ୍ମୀ ଗୋଟାଏ ମୁହୂର୍ତ୍ତ କାଠପିତୁଳା ଭଳି ସ୍ତମ୍ଭୀଭୂତ ହୋଇ ରହିଲା। ତା'ପରେ ଦୌଡ଼ିଲା।

ପଣ୍ଡିତ ବି ଦୌଡ଼ିଲେ ।

ସାମ୍ନାରେ ପୋଖରୀଟିଏ । ଲକ୍ଷ୍ମୀର ପଥଘାଉଅ ଜ୍ଞାନ ଯେମିତି ବିଲୁପ୍ତ ହୋଇଥିଲା । ସେ ପଶିଗଲା ପୋଖରୀ ଭିତରେ । ପଣ୍ଡିତଙ୍କ କଣ୍ଠ ଶୁଣି ଓ ତାଙ୍କୁ ଧାବମାନ ଅବସ୍ଥାରେ ଦେଖି ଜମି ଆସିଲେ ଲୋକେ - ପାଞ୍ଚ, ଦଶ, ପନ୍ଦର କୋଡ଼ିଏ ।

ଲକ୍ଷ୍ମୀ ପୋଖରୀ ଭିତରେ ଛିଡ଼ା ହୋଇଛି । ଅଣ୍ଟାଯାଏ ପାଣି । ଛାତିରେ ଭିଡ଼ି ଧରିଛି କଦଳୀ ଦୁଇଟି ।

"ବାହାରିଆ ପୋଖରୀ ଭିତରୁ ।" ପଣ୍ଡିତ ରଡ଼ିକଲେ । "ବାହାରିଆ" - ଅନ୍ୟମାନେ ବି ପାଟିକଲେ । ବିସ୍ଫାରିତ ନୟନରେ ଲକ୍ଷ୍ମୀ ସଭିଁକୁ ଅନାଇଁଥାଏ କେବଳ ।

ତା'ପରେ ଜନତାକୁ ଠେଲି ପୋଖରୀ ଆଡ଼କୁ ବାହାରି ଆସିଲେ ଲକ୍ଷ୍ମୀର ବାପା । ତାଙ୍କୁ ଦେଖିବାମାତ୍ରେ କାନ୍ଦି ଉଠିଲା ଲକ୍ଷ୍ମୀ । ପାଣିରେ ପଶି ବାପା ତାକୁ କୋଳ କରି ଉଠାଇ ଆଣିଲେ ।

ଜନତା କହିଲା, "ଆହା! କେଡ଼େ ଗୁଣବତୀ କନ୍ୟା! କଦଳୀ ଦୁଇଟା ବଡ଼ କଥା ନୁହେଁ ଯେ, କଥା ହେଲା ଝିଅର ଚରିତ୍ର!" "ଦିନ ଦୁଇ ପହରେ ଏଡ଼ିକି ସାହାସ!" "ବାପ୍‌ରେ!"

କଦଳୀ ଦୁଇଟି ଲକ୍ଷ୍ମୀ ହାତରୁ ନେଇ ବାପା ପଣ୍ଡିତଙ୍କୁଅ ଧରେଇଦେଲେ ଓ ନିର୍ବାକ ଭାବରେ ଝିଅକୁ କାନ୍ଧରେ ପକାଇ ଧୀରେ ଧୀରେ ଘରକୁ ଫେରିଲେ ।

ଲକ୍ଷ୍ମୀ ଆଉ କଥା କହିନାହିଁ । ସନ୍ଧ୍ୟାକୁ ଆସିଲା ପ୍ରବଳ ଜ୍ୱର । ତିନିଦିନ ପରେ ସେ ଚାଲିଗଲା ।

ରବିବାର ସନ୍ଧ୍ୟାରେ ସାପ୍ତାହିକ ପୁରାଣପାଠ ସମାବେଶରେ ସେଥର ସମସ୍ତଙ୍କ ମୁହଁରେ ଦିଅଁଙ୍କ ପ୍ରଶଂସା । ଯେଉଁ ଦେବତାଙ୍କୁ ସେମାନେ ଭରଣପୋଷଣ କରି ରଖିଛନ୍ତି, ସେ ଏଡ଼େ ପ୍ରତ୍ୟକ୍ଷ ଦେବତା! ତାଙ୍କ ସିଂହାସନ ପାଖରୁ ତାଙ୍କ ଆହାର ଚୋରିକରି ଯେ ନିସ୍ତାର ନାହିଁ, ଏହାର ପ୍ରମାଣ ସେ ଦେଖାଇ ଦେଲେ ।

ଏହି ଆଲୋଚନାରେ ଅଂଶ ଗ୍ରହଣ କରୁଥିବା ମନ୍ଦିର ପୁନଃ ନିର୍ମାଣ ବେଳେ ଆଦାୟୀକୃତ ଚାନ୍ଦାର ପ୍ରଚୁର ପରିମାଣ ଆତ୍ମସାତ୍ କରିଥିବା ସ୍ଥାନୀୟ ନେତା ଓ ମନ୍ଦିରର ବିଭିନ୍ନ ବିଭାଅରୁ କ୍ରମାଗତ ଚୋରିକରୁଥିବା ଦୁଇଜଣ ସେବକ ଲକ୍ଷ୍ମୀର ଦଶାରେ ରୋମାଞ୍ଚିତ ହେବା ସଙ୍ଗେ ସଙ୍ଗେ ଭଗବାନ ସେମାନଙ୍କ ଚୋରି ଧରିପାରିଛନ୍ତି କି ନାହିଁ, ଓ ଧରିଥିଲେ କିବା ଉଦ୍ଦେଶ୍ୟରେ ପ୍ରତିଶୋଧ ନେଇନାହାନ୍ତି ଏହା ନେଇ ଅତ୍ୟନ୍ତ ଦୁଷ୍ଚିନ୍ତାରେ ପଡ଼ିଥିଲେ । ଫଳରେ ଦିଅଁଙ୍କର ପ୍ରଚୁର ପ୍ରଶଂସା କରୁଥିଲେ ସେମାନେ; ଦିଅଁ ଶୁଣୁଛନ୍ତି ବୋଲି ଆଶା କରୁଥିଲେ ।

ବିମର୍ଷ ଭାବରେ, ନିରବରେ ବସିରହିଥିଲେ ଏକା ପୂଜାରୀ ପଣ୍ଡିତେ । ଯେତେବେଳେ ଦିଅଁଙ୍କ ପ୍ରତ୍ୟକ୍ଷତାର ପ୍ରମାଣରେ ଉଦ୍‌ବୁଦ୍ଧ ଜନତା ହରିବୋଲ୍ ଧ୍ୱନି ଦେଇ ଉଠିଲେ, ହଠାତ୍ ପଣ୍ଡିତେ ଅନୁଭବ କଲେ, ସେଇ ମୁହୂର୍ତ୍ତରେ ଦିଅଁଙ୍କ ବିଭୂତି ସିଂହାସନ ଛାଡ଼ି ଚାଲିଗଲା - ପଡ଼ିରହିଲା କେବଳ ଏକ ଦୀପ୍ତିହୀନ, ଅର୍ଥହୀନ ରୂପ!

"ଏ କ'ଣ ପଣ୍ଡିତେ! ତୁମ ଦେହରେ ତ ଖଇ ଫୁଟିବ!" ଜଣେ ସେବକ ତାଙ୍କୁ ସ୍ପର୍ଶ କରି ମନ୍ତବ୍ୟ ଦେଲେ ।

ଜୀବନର ଅବଶିଷ୍ଟ କେଇଦିନ ପଣ୍ଡିତେ ନିରବରେ ଏତିକି ପ୍ରାର୍ଥନା କରିଥିଲେ, "ପ୍ରଭୂ! ପରଜନ୍ମରେ ଏ ପାପିଷ୍ଠ ଯେମନ୍ତେ ଜିହ୍ୱାହୀନ ହୋଇ ଭୂମିଷ୍ଠ ହେଉ ।"

—୦—

ଓଡ଼ିଶାର ପ୍ରଖ୍ୟାତ ସାହିତ୍ୟିକ ମନୋଜ ଦାସଙ୍କ ଅନୁମତିକ୍ରମେ ପ୍ରକାଶିତ






# ଆ କା ମା ଭୈ... ଏବଂ କାର୍ତ୍ତିକ ପୂର୍ଣ୍ଣମୀର ମହତ୍ତ୍ୱ

ଡ଼ା ଜ୍ୟୋତି ପ୍ରସାଦ ପଟ୍ଟନାୟକ

*“ଆ କା ମା ଭୈ, ପାନ ଗୁଆ ଥୋଇ*

*ପାନ ଗୁଆ ତୋର, ମାସକ ଧର୍ମ ମୋର” ॥*

ପବିତ୍ର କାର୍ତ୍ତିକ ମାସର ଶୁକ୍ଳପକ୍ଷ ପୂର୍ଣ୍ଣମୀ ଦିନକୁ କାର୍ତ୍ତିକ ପୁର୍ଣ୍ଣିମା ଭାବରେ ପାଳନ କରାଯାଏ । ଓଡ଼ିଶାର ଜାତୀୟ ପରମ୍ପରାର ଏକ ଅଭିନ୍ନ ଅଙ୍ଗ ଭାବରେ ଏହି ଦିନଟିର ମହତ୍ତ୍ୱ ବହୁତ ଅଧିକ । କାର୍ତ୍ତିକ ମାସ ଶିବଙ୍କ ମାସ ଭାବରେ ପ୍ରଚଳିତ ଏବଂ ପ୍ରାୟ ଅଧିକାଂଶ ହିନ୍ଦୁ ପରିବାର ଏହି ମାସରେ ଆମିଷ ଭକ୍ଷଣରୁ ଦୁରରେ ରହନ୍ତି । କଥାରେ ଅଛି ଯେ ଏହି ମାସର ମହତ୍ତ୍ୱ ଏତେ ବେଶୀ ଯେ ମାଛ ଖାଇ ଚଳୁଥିବା ବଗ ମଧ୍ୟ ଏହି ମାସରେ ଆମିଷ ଭକ୍ଷଣ ତ୍ୟାଗ କରିଦିଏ । ପ୍ରାତଃ କାଳରୁ ସ୍ନାନ ସାରି, ମନ୍ଦିର ଓ ଦେବାଳୟ ମାନଙ୍କରେ ଶିବଙ୍କ ଦର୍ଶନ ପାଇଁ ଜମା ହୋଇଥାନ୍ତି । ବୟସ୍କା ସ୍ତ୍ରୀମାନେ ଏବଂ ବିଧବାମାନେ ଏହି ସମୟରେ ଜଗନ୍ନାଥଧାମ ପୁରୀରେ ରହି ପ୍ରତ୍ୟହ ଜଗନ୍ନାଥଙ୍କ ସେବା ଆଳତୀ ସମୟରେ ଉପସ୍ଥିତ ରହି ବୈକୁଣ୍ଠ ପ୍ରାପ୍ତି ପାଇଁ ପ୍ରାର୍ଥନା କରିଥାନ୍ତି । ବିଭିନ୍ନ ଗ୍ରାମାଞ୍ଚଳରେ ଆକାଶ ଦୀପର ପ୍ରଚଳନ ମଧ୍ୟ ରହିଥାଏ । ମାଟିର ଗୋଟିଏ ହାଣ୍ଡିରେ କଣ୍ଟା ସାହାଯ୍ୟରେ କଣା କରାଯାଇ ସରା ଦେଇ ତା’ ମୁହଁକୁ ବନ୍ଦ କରିଦିଆଯାଏ । ଏହି ହାଣ୍ଡି ଭିତରେ ଘିଅ ଦୀପ ଜଳାଇ ଏକ ବାଉଁଶ ଖୁଣ୍ଟ ଉପରେ ଝୁଲାଇ ଦିଆଯାଏ । ପ୍ରତି ସନ୍ଧ୍ୟାରେ ସେହି ଦୀପକୁ ଜଳାଇ ଦିଆଯାଏ । ଗାଁ ମାନଙ୍କରେ ମୃଦଙ୍ଗ ଓ ଝାଞ୍ଜ ଧରି ଲୋକମାନେ ସନ୍ଧ୍ୟାରେ ଗାଁ ସାରା ବୁଲି ବୁଲି କୀର୍ତ୍ତନ କରନ୍ତି ।ଘରେ ସ୍ତ୍ରୀଲୋକମାନେ ତୁଳସୀ ଚଉଁରା ମୂଳେ ସୁନ୍ଦର ଝୋଟିଚିତା ଆଙ୍କି ପୂଜା କରନ୍ତି । ବିଭିନ୍ନ୍ ରଙ୍ଗର ମୁରୁଜ ନେଇ ଭିନ୍ନ ଭିନ୍ନ ଆକାରର ଚିତା ସବୁ କରନ୍ତି ।

କାର୍ତ୍ତିକ ମାସର ଶେଷ ପାଞ୍ଚଦିନକୁ ପଞ୍ଚୁକ (ପାଞ୍ଚ ଦିନର ସମାହାର) କୁହାଯାଏ । ଏହି ସମୟରେ ନୈଷ୍ଠିକ ହିନ୍ଦୁମାନେ ଦିନରେ ମାତ୍ର ଥରେ ଅପରାହ୍ନରେ ଭୋଜନ କରିଥାନ୍ତି ଏବଂ ପ୍ରତ୍ୟହ ଶିବାଳୟରେ ଯାଇ ପୂଜାର୍ଚ୍ଚନା କରନ୍ତି । କାର୍ତ୍ତିକ ପୂର୍ଣ୍ଣିମା ଦିନ ପୁରାଣ କହେ, ଶିବ ତ୍ରିପୁରାସୁରକୁ ବଧ କରିଥିଲେ । ସେ ଯା ହେଉ, ଏହି ମାସରେ ନିରାମିଷ ଭକ୍ଷଣ କରି ନିଷ୍ଠାରେ ରହୁଥିବା ପ୍ରତ୍ୟେକ ହିନ୍ଦୁ ସମସ୍ତ ପାପରୁ ତ୍ରାହି ମିଳିଥାଏ

ବୋଲି କୁହାଯାଏ । ଦୈନିକ ଥରୁଟିଏ ମାତ୍ର ହବିଷ୍ୟାର୍ନ୍ନ ଭକ୍ଷଣ କରି ହିନ୍ଦୁମାନେ ଶିବଙ୍କୁ ପୂଜା କରିଥାନ୍ତି ।

କାର୍ତ୍ତିକ ପୂର୍ଣ୍ଣିମାର ସାମାଜିକ ମହତ୍ତ୍ୱ ବହୁତ୍ ଅଧିକ । ଓଡ଼ିଶା ସମାଜର ଅତୀତର ଗୌରବ ମୟ ଇତିହାସର ଏହା ଏକ ଅବିଚ୍ଛେଦ୍ୟ ଅଙ୍ଗ । ଅତୀତରେ ଓଡ଼ିଶାରୁ ବ୍ୟବସାୟ କରୁଥିବା ସାଧବ ପୁଅମାନେ ଏହି ଦିନ ବଡ଼ ବଡ଼ ବୋଇତରେ ବସି ବିଶ୍ୱର ବିଭିନ୍ନ ଦେଶ ଯଥା ଜାଭା, ସୁମାତ୍ରା, ବୋର୍ଣ୍ଣିଓ, ସିଂହଳ ଆଦି ଦେଶକୁ ଯାଇ ବ୍ୟବସାୟ କରୁଥିବାର ପ୍ରମାଣ ରହିଛି । ସେଇଥି ପାଇଁ ଏହି ଦିନ ବଡ଼ି ଭୋରରୁ ଓଡ଼ିଶାର ପ୍ରାୟ ଅଧିକାଂଶ ଲୋକ ବିଭିନ୍ନ ଜଳସ୍ରୋତ ନିକଟରେ ଜମାହୋଇ ସାନ ସାନ ବୋଇତ ଭସାଇ ଥାନ୍ତି । କଦଳୀ ପଟୁକାରେ ତିଆରି ବୋଇତରେ ତୁଳାକାଠିରେ ନିଆଁ ଲଗାଇ ଜଳସ୍ରୋତ ମାନଙ୍କରେ ହଜାର ହଜାର ସଂଖ୍ୟାରେ ଭସାଯାଏ । ଆଜିକାଲି କାଗଜ, କର୍କ ଆଦିରେ ମଧ୍ୟ ବୋଇତ ନିର୍ମାଣ କରାଯାଇ ଭସା ଗଲାଣି । ସେହି ବୋଇତରେ, ଗୁଆ, ପାନ ପତ୍ର, ପାନ ମହୁରୀ ଇତ୍ୟାଦି ଦ୍ରବ୍ୟ ରଖି ଭସାଯାଉଥିବା ସମୟରେ "ଆ କା ମା ଭୈ, ପାନ ଗୁଆ ଥୋଇ…" ଗୀତ ଗାଆନ୍ତି । ଏହି ଗୀତ ପଛରେ ଥିବା ମହତ୍ତ୍ୱ ଆମର ସାମାଜିକ ବ୍ୟବସ୍ଥାକୁ ଇଙ୍ଗିତ କରେ । ଅତୀତରେ ବ୍ୟାପାର୍ କରିବାପାଇଁ ବିଦେଶ ଯାଉଥିବା ସାଧବ ମାନଙ୍କୁ ତାଙ୍କ ପରିବାରର ସ୍ତ୍ରୀ ଲୋକମାନେ ଆଶ୍ୱିନ, କାର୍ତ୍ତିକ ଓ ମାର୍ଗଶୀରରେ ଏହି ଯାତ୍ରା କରିବା ପାଇଁ କହୁଥିବା ହେତୁ ଏହି କବିତାରେ ଆ, କା ଓ ମା ଶବ୍ଦର ଉଚ୍ଚାରଣ ରହିଛି ।

କାର୍ତ୍ତିକ ପୂର୍ଣ୍ଣମୀ ଦିନ କଟକର ମହାନଦୀ କୂଳରେ ଏକ ସାତ ଦିନିଆ ମେଳଣ ହୁଏ, ଯାହାକୁ ବାଲିଯାତ୍ରା କୁହାଯାଏ । ଏଠାରେ ମଧ୍ୟ ବୋଇତ ବନ୍ଦାଣ ଉତ୍ସବ ପାରମ୍ପାରିକ ରୀତିନୀତିରେ ପାଳନ କରାଯାଏ । ଏବଂ ଏହି ଦିନ ଭକ୍ତମାନେ ପୁରୀ ସମୁଦ୍ରରେ ବୁଡ଼ ଦେଇ ମହାପ୍ରଭୂ ଶ୍ରୀ ଜଗନ୍ନାଥଙ୍କ ପୂଜାର୍ଚ୍ଚନା କରି କାର୍ତ୍ତିକ ବ୍ରତ ସମାପନ କରିଥାନ୍ତି । ଏହି ଦିନ ଗୋମତୀ ତୁଠରେ ବୁଡ଼ ପକାଇଲେ ସକଳ ପାପ କ୍ଷୟ ହେବାର ଉଦାହରଣ ଆମ ଶାସ୍ତ୍ରରେ ରହିଛି । ବିଭିନ୍ନ ଶିବମନ୍ଦିରରେ ଏଥିପାଇଁ କାର୍ତ୍ତିକ ପୂର୍ଣ୍ଣମୀ ମେଳାର ଆୟୋଜନ ମଧ୍ୟ କରାଯାଏ ।

ସମସ୍ତ ଓଡ଼ିଶାବାସୀଙ୍କୁ ଆହ୍ୱାନ ଓଡ଼ିଆ ପରିବାର ତରଫରୁ ପବିତ୍ର କାର୍ତ୍ତିକ ପୂର୍ଣ୍ଣମୀ ପର୍ବର ହାର୍ଦ୍ଦିକ ଅଭିନନ୍ଦନ ।






# ଜୀବନର ଲକ୍ଷ୍ୟ

ଉଦୟନ ସୂପକାର

ପାଠ ପଢ଼ିବୁ ମଣିଷ ହେବୁ, ବଡ଼ହୋଇ ବାପ କଣ ତୁ ହେବୁ ॥୧
ବାଅ ପ୍ରଶ୍ନ ପୁଅ ଶୁଣିଲା ଯେବେ, ମନ ଦେଇ ଶୁଣ କହୁଛି ଏବେ ॥୨
ତୁମ ଇଚ୍ଛା ସବୁ ପୂର୍ଣ୍ଣ କରିବି, ବଡ଼ହୋଇ ବାପା ଗୁଣ୍ଡା ମୁଁ ହେବି ॥୩
କଥା ଶୁଣିବାପା ଧରିଲେ ମଥା, କହିଲେ ପୁଅରେ କହୁ କି କଥା ॥୪
ଏ ବୁଦ୍ଧି କିଏସେ ଦେଲାରେ ତତେ, ଗୁଣ୍ଡା କିଏ ତୁ କି ଜାଣୁନା ସତେ ॥୫
ବାପକୁ କହିଲା ପୁଅ ଯେ ହସି, ଭଦର ଲୋକତ ଦେଶରେ ଖାସି ॥୬
ଜୀବନଯାକ ସେ ଖାଲି ଖଟନ୍ତି, ମଉଜ ଯେ ବାହାପିଆ କରନ୍ତି ॥୭
ହାଣ ମୁହଁ କୁ ତ ସାଧୁ ହିଁ ଯାଏ, ମାଉଁସ ତିଅଣ ଗୁଣ୍ଡା ହିଁ ଖାଏ ॥୮
ଗୁଣ୍ଡାଙ୍କ କଥା ତ ଅଟେ ଅଲଗା, ସେମାନେ ଏଦେଶେ ଅସଲ ରାଜା ॥୯
ପୋଲିସ୍, ଅମଲା ଓ ସରକାର, ଗୁଣ୍ଡାଙ୍କ ଆଗରେ କିଣା ଚାକର ॥୧୦
କିଏ ସେ ନ ଜାଣେ କହ ଏହାଙ୍କୁ, ଯେ କରେ ବିରୋଧ ହୁଏ ତ୍ରିଶଙ୍କୁ ॥୧୧
ଏହାଙ୍କ ଆଶୀଷ ନେଇଣ ନେତା, ଦେଖାନ୍ତି ବହପ ତୁନି ଜନତା ॥୧୨
ନ୍ୟୁଜ୍ ଚ୍ୟାନେଲ୍ ଯେବେ ଖୋଲିବ, ଗୁଣ୍ଡା ମାନଙ୍କର କୀର୍ତ୍ତି ଶୁଣିବ ॥୧୩
ସିନେମା ହେଉ କି ଧାରାବାହିକ, ଏମାନେ ସାଜନ୍ତି ତହିଁ ନାୟକ ॥୧୪
ଗୁଣ୍ଡା ହିଁ ବୋଲାନ୍ତି ମହାପୁରୁଷ, ଆନେ ଅଠା ଦେଇ ଖାନ୍ତି ପଣସ ॥୧୫
ଭଦର ଲୋକକୁ କିଏ ପଚାରେ, ଲୁହ ବୁହାଏ ସେ ଘର କୋଣରେ ॥୧୬
ସମସ୍ତେ ଲଙ୍ଗଳା ଯେଉଁ ରାଇଜେ, ଲୁଗା ପିନ୍ଧା ସେଠି ପାଗଳ ସାଜେ ॥୧୭
ହେବିନାହିଁ ମୁହିଁ ଭଦ୍ର ପୁରୁଷ, ଗୁଣ୍ଡା ହୋଇ ଦେଖ ଅର୍ଜିବି ଯଶ ॥୧୮

ଉଦୟନ ସୂପକାରଙ୍କ ଲିଖିତ ପିତା-ପୁତ୍ର ସମ୍ବାଦ ପୁସ୍ତିକାରୁ ଉଦ୍ଧୃତ







# ମୁଖ୍ୟ ଅତିଥି

ଡ଼ା ସହଦେବ ସ୍ୱାଇଁ

ବିଶ୍ୱାସ ହୁଏନା, ବାପାଙ୍କର ମୃତ୍ୟୁ ହେବାର ଏକ ବର୍ଷ ବିତିଗଲାଣି । ବର୍ଷିକିଆରେ ସପରିବାର ଏବଂ ବିଶେଷ ବନ୍ଧୁବାନ୍ଧବ ଯୋଗଦାନ କରିବେ । ମୃତ୍ୟୁର ଏକ ବର୍ଷପରେ ସମସ୍ତେ ତାଙ୍କ ଜୀବନ ସ୍ମୃତି ଓ କୃତିକୁ ପୁଣିଥରେ ମନେ ପକାଇବେ ।

ମଝିଆଁ ବାପା - ବାପାଙ୍କର ମଝିଆ ଭାଇ । ବାପାଙ୍କୁ ବହୁତ ଭଲ ପାଆନ୍ତି । ଅବଶ୍ୟ ବାପାଙ୍କର ବୃଦ୍ଧାବସ୍ଥାରେ ସେମାନେ ସଂଯୁକ୍ତ ପରିବାରରୁ ଅଲଗା ହୋଇ ଯାଇଥିଲେ । ତଥାପି ତାଙ୍କର ତତ୍ତ୍ୱାବଧାନରେ ସମସ୍ତ କାର୍ଯ୍ୟ ସଂଯୋଗ ହେବ । ସେ ବାପାଙ୍କର ଜଣାଶୁଣା ସମସ୍ତ ସରକାରୀ ଯନ୍ତ୍ରୀ ତଥା ଅନ୍ୟାନ୍ୟ କାର୍ଯ୍ୟକର୍ତ୍ତାଙ୍କୁ ନିମନ୍ତ୍ରଣ କରିବେ ।

ଅଳୀବାବୁ ଜଣେ ସ୍ଥାନୀୟ ନେତା । ବାପାଙ୍କର ତାଙ୍କ ସହିତ ଘନିଷ୍ଠ ମିତ୍ରତା । ତାଙ୍କୁ ନିମନ୍ତ୍ରଣ କରିବାରୁ ସେ ଅତ୍ୟନ୍ତ ଆଗ୍ରହର ସହିତ ସସ୍ତ୍ରୀକ ସମାରୋହରେ ଯୋଗଦେଲେ ।

ବାପାଙ୍କର ଅସ୍ଥିଦାନ ପାଇଁ ଗଙ୍ଗାତଟରେ ତୀର୍ଥ ଯାତ୍ରା କରିବାକୁ ହେଲା । ସେହି ଯାତ୍ରା ସମୟରେ ବିରଜୁ ମହାରାଜଙ୍କର ସମ୍ମାନ ସମାରୋହରେ ଯୋଗଦାନର ଶୁଭ ଅବସର ମିଳିଲା । ବିରଜୁ ମହାରାଜ - ନୃତ୍ୟ ଏବଂ ସଂଗୀତର ଅବତାର । ପ୍ରକୃତିର ପ୍ରତ୍ୟେକ କୋଣରେ ତାଙ୍କୁ ମିଳିଛି ସଂଗୀତ ଆଉ ଲୟର ଅନୁଭୂତି । ସ୍ୱର ଏବଂ ଲୟ ଶୂନ୍ୟରୁ ଆସି ତାଙ୍କର ସୃଜନ ଶକ୍ତିକୁ ଛୁଇଁ ଜନମାନସରେ ପରିବେଶିତ ହୁଏ । ତାଙ୍କର ଦର୍ଶନ ଓ ସତ୍ସଙ୍ଗର ଶୁଭ ଅବସର ପାଇ ମୁଁ ନିଜକୁ ଅତ୍ୟନ୍ତ ଭାଗ୍ୟବାନ ମନେ କରେ ।

ମୋର ବାନ୍ଧବୀ ଆମେରିକାର ଶିଶୁରୋଗର ମୁଖ୍ୟ ଅଧ୍ୟାପିକା ଏବଂ ଦିଲ୍ଲୀର ମାନସିକ ବିକୃତି ବିଶେଷଜ୍ଞ ଅବଶ୍ୟ ଉଲ୍ଲେଖଯୋଗ୍ୟ ।

କିନ୍ତୁ ମନ ଏବଂ ହୃଦୟର ତାରକୁ ସ୍ପର୍ଶ କରିଥିଲେ ଏ ବର୍ଷର ପ୍ରକୃତ ମୁଖ୍ୟ ଅତିଥିଗଣ । ସେମାନେ ହେଲେ ବ୍ରହ୍ମପୁରର ବାଳାଶ୍ରମର ବାଳିକାମାନେ । ଆହ୍ୱାନ ଓଡ଼ିଆ

ପରିବାର ପ୍ରତିଷ୍ଠାତା ଡ଼ା ଜ୍ୟୋତି ପ୍ରସାଦ ପଟ୍ଟନାୟକଙ୍କ ସହାୟତାରେ ବାପାଙ୍କର ବର୍ଷିକିଆରେ ଆମନ୍ତ୍ରଣକୁ ଗ୍ରହଣ କରି ସେମାନେ ଅତ୍ୟନ୍ତ ଶୃଙ୍ଖଳିତ ଭାବରେ ଆମ ଘରେ ପହଞ୍ଚିଥିଲେ । ସେମାନଙ୍କର ସୁନ୍ଦର ଗାନ ଏବେ ମଧ୍ୟ କାନରେ ବାଜି ଉଠେ । ଏ ପ୍ରକାରର ଅନୁଭୂତି ମୋ ପାଇଁ ପ୍ରଥମ ଥର ହୋଇଥିଲା ।

ବାଟରେ ଯାଉଥିବା ମୋଟର ସାଇକେଲ ଯାତ୍ରୀ ପଚାରିଲେ, 'ଏଠାରେ କ'ଣ ହେଉଛି ଆଜ୍ଞା ?' ମୋର ଉତ୍ତର ଶୁଣି ସେ ଆଶ୍ଚର୍ଯ୍ୟ ଚକିତ ହୋଇ ଯାଇଥିଲେ ।

ମୋ ସ୍ତ୍ରୀ, ମାଆ ଏବଂ ସମସ୍ତ ପରିବାର ପାଇଁ ଏକ ନିଆରା ଅନୁଭୂତି ଥିଲା । ହଠାତ୍ କରେଣ୍ଟ୍ ଯିବାରୁ ଅନ୍ଧକାର ହୋଇଯାଇଥିଲା । କାଳେ ପିଲାମାନେ ରସଗୋଲା ଖାଇବା ସମୟରେ ତାଙ୍କର ପୋଷାକ ଖରାପ ହୋଇଯିବ ସେଥିପାଇଁ ମୋ ସ୍ତ୍ରୀ ଅଞ୍ଜଳୀ ନିଜ ହାତରେ ବାଳିକା ମାନଙ୍କୁ ରସଗୋଲା ଖୁଆଇ ଦେଲେ ।

ଏ ସବୁ ଶେଷ ହେବାର ଅଳ୍ପ ସମୟ ପରେ ମୁଁ ଯେତେବେଳେ ଅଞ୍ଜଳୀକୁ ଦେଖିଲି ସେତେବେଳେ ତା'ର ଆଖିରୁ ଦୁଇଟି ଅଶ୍ରୁର ଧାର ବହିଯାଉଥିଲା- ଆନନ୍ଦର ଅଶ୍ରୁ ।

ଜୀବନରେ ବହୁତ କିଛି ଯାହା ଆମ ପାଖରେ ଅଛି ବା ଥାଏ – ଯେପରିକି ମାଆ ଏବଂ ବାପା ସେତେବେଳେ ହୁଏତ ଆମେ ତାକୁ ଗୁରୁତ୍ୱ ଦିଅନ୍ତି ନାହିଁ । କିନ୍ତୁ ସେଇ ବ୍ୟାକ୍ତି ଯେତେବେଳେ ନଥାନ୍ତି ସେତେବେଳେ ତାହାର ଗୁରୁତ୍ୱ ଅନୁଭୂତ ହୁଏ ।

ଦିନକର ମୁଖ୍ୟ ଅତିଥି ଏହି ବାଳିକା ମାନଙ୍କର ଜୀବନ ବିଷୟରେ ଚିନ୍ତାକଲେ ମନରେ ଯେତିକି ଦୁଃଖ ଆସେ ସେତିକି ଗର୍ବ ବି ଅନୁଭୂତ ହୁଏ ।

ଗର୍ବର କାରଣ ହେଲା ଯେ କେତେ ଛୋଟିଆ ଯାଗାରେ ରହି ସେ ବାଳିକାମାନେ ଅନ୍ୟ ମାନଙ୍କର ଅନୁଗ୍ରହରେ ନିର୍ଭର କରିଥିଲେ ମଧ୍ୟ ସତତ୍ ସ୍ୱୟଂ-ସଂପୂର୍ଣ୍ଣ ଏବଂ ଅତ୍ୟନ୍ତ ଅନୁଶାସନପୂର୍ଣ୍ଣ ଜୀବନ ଯାପନ କରନ୍ତି ।

ପ୍ରକୃତରେ ଏବେ ବି ମୁଁ ଯେତେବେଳେ ସେ ଫୋଟୋ ଦେଖେ ବା ଚିନ୍ତାକରେ ମନରେ ଏକ ବିଚିତ୍ର ଭାବନା ଯାଗିଉଠେ ।

ଏଇ ବାଳିକା ମାନଙ୍କୁ ଭଗବାନ ରକ୍ଷା କରନ୍ତୁ ଏତିକି ପ୍ରାର୍ଥନା । କିଏ ଜାଣେ ସେଇ ମାନଙ୍କ ଭିତରେ ହୁଏତ ଆଉଜଣେ ନନ୍ଦିନୀ ଶତପଥୀ ବା ଇନ୍ଦିରା ଗାନ୍ଧୀ ବା ମଦର

ତେରେସା ଛପି ଅଛନ୍ତି !!!

-0-

ବ୍ରହ୍ମପୁର ବିଜିପୁର ନିକଟସ୍ଥ ନିଳକଣ୍ଠନଗରରେ ରହୁଥିବା ଡ଼ା ସହଦେବ ସ୍ୱାଇଁ ମହାଶୟ ବିଗତ ଅନେକ ବର୍ଷ ହେଲା ସୁଦୂର ଲଣ୍ଡନରେ ନିଜର ପ୍ରାଇଭେଟ୍ କ୍ଲିନିକ୍ କରି ରହୁଛନ୍ତି । ସପତ୍ନୀକ ଜନ ସେବାରେ ନିୟୋଜିତ ଡ଼ା ସ୍ୱାଇଁ ଆହ୍ୱାନ ଓଡ଼ିଆ ପରିବାରର ସମସ୍ତ ଜନସେବା କାର୍ଯ୍ୟରେ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବରେ ଜଡ଼ିତ ରହିଛନ୍ତି । ଅତୀତରେ ସେ ଆମକୁ ଅନେକ ସମୟରେ ବିଭିନ୍ନ କାର୍ଯ୍ୟକ୍ରମ ସମୟରେ ଆର୍ଥିକ ସହାୟତା କରିଛନ୍ତି ।

ବିଗତ ଦିନରେ ସେ ଯେତେବେଳେ ବ୍ରହ୍ମପୁର ଆସିଥିଲେ ସେ ଚାହିଁଥିଲେ ଯେ ନିଜ ବାପାଙ୍କର ମୃତ୍ୟୁର ବାର୍ଷିକୀରେ କିଛି ସାମାଜିକ ସେବା କରିବା ପାଇଁ, ସେଇଥି ପାଇଁ ସେ ଅନାଥାଶ୍ରମର ବାଳିକା ମାନଙ୍କୁ ମାଗଣାରେ ପୋଷାକପତ୍ର ସହିତ ମାଗଣାରେ ଖାଇବାକୁ ଦେବାର ପ୍ରସ୍ତାବ ଦେଇଥିଲେ । ସେଇଥି ପାଇଁ ଆମେ ବ୍ରହ୍ମପୁରରେ ଥିବା ବାଳାଶ୍ରମରେ ରହୁଥିବା ଶତାଧିକ ବାଳିକା ମାନଙ୍କ ନିମନ୍ତେ ସମସ୍ତ ଯୋଜନା କରିଥିଲୁ ।

ବାର୍ଷିକୀ ଦିନ ସଂଧ୍ୟାରେ ବାଳାଶ୍ରମର ୧୨୦ ଜଣ ଛାତ୍ରୀଙ୍କୁ ଗାଡ଼ିରେ ବସାଇ ଡ଼ା ସ୍ୱାଇଁଙ୍କ ବାସଭବନ କୁ ନିଆ ଯାଇଥିଲା । ସେଠାରେ ସେମାନେ ସମବେତ ସଂଗୀତ ଗାଇ ସମବେତ ଅତିଥି ମାନଙ୍କୁ ଅଭିଭୂତ କରି ଦେଇଥିଲେ । ଏହାପରେ ସେମାନେ ଅନୁଷ୍ଠିତ ଭୋଜିରେ ସାମିଲ୍ ହୋଇଥିଲେ । ଏବଂ ଭୋଜିପରେ ସେମାନଙ୍କୁ ସ୍କୁଲ ପାଇଁ ପୋଷାକ (ୟୁନିଫର୍ମ) ଦିଆଯାଇଥିଲା ।

ଏହି କାର୍ଯ୍ୟକ୍ରମ ସମୟରେ ଡ଼ା ସ୍ୱାଇଁଙ୍କ ଧର୍ମପତ୍ନୀ ଅଞ୍ଜଳୀ ଦେବୀ ବାଳିକା ମାନଙ୍କୁ ନିଜ ହାତରେ ମିଠା ଖୁଆଇ ଦେଇଥିଲେ । ଏବଂ ତାଙ୍କର ଅନାବିଳ ସ୍ନେହ ଦେଖି ଉପସ୍ଥିତ ଅତିଥି ମାନଙ୍କ ମଧ୍ୟରେ ଆନନ୍ଦ ଦେଖାଯାଇଥିଲା ।

ଡ଼ା ସହଦେବ ସ୍ୱାଇଁଙ୍କ ପରି ସମସ୍ତେ ଯଦି ମାନବ ସେବାକୁ ନିଜ ଧର୍ମ ମାନି ନିଅନ୍ତେ, ତେବେ ଆମର ସାମାଜିକ ଅସମାନତା କିଛି ପରିମାଣରେ ଦୂର ହୋଇ ପାରନ୍ତା । ଆହ୍ୱାନ ଓଡ଼ିଆ ପରିବାର ତରଫରୁ ଡ଼ା ସ୍ୱାଇଁଙ୍କୁ ଅଶେଷ ଧନ୍ୟବାଦ ।



# ଓଡ଼ିଶା ବନ୍ୟା ୨୦୧୧ (କିଛି ଅନୁଭୂତି)

ଚନ୍ଦ୍ରଶେଖର ବିଶ୍ୱାଳ

ଓଡ଼ିଶା ଭଳି ଏକ ନଦୀ ବହୁଳ ରାଜ୍ୟରେ ମହାନଦୀ, ବ୍ରାହ୍ମଣୀ, ବୈତରଣୀ, ବୁଢ଼ାବଳଙ୍ଗ, ସାଳନ୍ଦୀ, କୁଶଭଦ୍ରା, କୁଆଖାଇ, କାଠଯୋଡ଼ି, ଆଦି ନଦୀ ପ୍ରବାହିତ ହେଉଛି । ଏହି ନଦୀମାନଙ୍କରେ ଅଯାଚିତ ଅବାରିତ ଦାନ ତଥା ଜଳ ଓ ପଟୁମାଟି ଫଳରେ ଆମର ଏ ବୀରଭୂମି ଉତ୍କଳ ଆଜି ସୁଜଳା, ସୁଫଳା ଓ ଶସ୍ୟଶ୍ୟାମଳା । ନିୟତିର ଲୀଳା ବଡ ବିଚିତ୍ର, ଉତ୍କଳକୁ ଉନ୍ନତ କରୁଥିବା ନଦୀମାନଙ୍କର କରାଳ ସ୍ରୋତ ଫଳରେ ସୃଷ୍ଟି ହୋଇଥାଏ ବନ୍ୟା । ଏହି ବନ୍ୟା ଫଳରେ ଆମ ଉତ୍କଳ ସୁଫଳାରୁ ହୋଇଯାଏ ନିଷ୍ଫଳା ।

୨୦୧୧ ମସିହାର ପ୍ରଳୟଙ୍କରୀ ବନ୍ୟା ଦୀର୍ଘ ୨୩ ବର୍ଷର ସର୍ବାଧିକ ଭୟଙ୍କର ପ୍ରଳୟଙ୍କରୀ ଭାବରେ ନାମିତ । ୨୦୦୧ ମସିହାର ସମସାମୟିକ ଭାବେ ବନ୍ୟା ହୋଇଥିଲା । ୧୯୮୨ ମସିହାରେ ସେତେବେଳେ ତ ମୋର ଜନ୍ମ ହୋଇନଥିଲା, ହେଲେ ୨୦୧୧ ମସିହାର କେତେକ ଅଙ୍ଗେଲିଭା ଘଟଣା କହିବାଉ ମୁଁ ଚେଷ୍ଟା କରିବି ।




୨୦୧୧ ମସିହା ବନ୍ୟା ପରବର୍ତ୍ତୀ ସମୟରେ ସଂସ୍କୃତି, ଭାରତୀ ଏବଂ ବିଶ୍ୱ ଓଡ଼ିଆ ସମ୍ମିଳନୀ ତରଫରୁ ମୁଁ ପ୍ରାୟ ଓଡ଼ିଶାର ସମସ୍ତ ବନ୍ୟା ପ୍ରପୀଡ଼ିତ ଅଞ୍ଚଳ ବୁଲିଛି ତଥା ସେହି ସବୁ ଅଞ୍ଚଳରେ ବନ୍ୟା ସହାୟତା ଦେବାରେ ସାହାଯ୍ୟ କରିଛି । ଅନ୍ୟର ସେବା କଲେ ଯେ କଣ ସୁଖ ମିଳେ ତାହା ପ୍ରତ୍ୟକ୍ଷ ଅନୁଭୂତି କରିଛି । ସଂସ୍କୃତି ଭାରତୀ, ବିଶ୍ୱ ଓଡ଼ିଆ ସମ୍ମିଳନୀର ସଭାଧ୍ୟକ୍ଷ ଇଂ ଶ୍ରୀକାନ୍ତ ନାୟକ ସୁଦୂର ଯୁକ୍ତରାଷ୍ଟ୍ର ଆମେରିକାରୁ ମୋତେ ଫୋନ କରି ଓଡ଼ିଶା ବନ୍ୟା ରିଲିଫ୍ ପ୍ରଦାନର ଦାୟିତ୍ୱ ଦେଇଥିଲେ, ଭିଡ଼ିଓ କନ୍‌ଫେରେନସିଂ ମାଧ୍ୟମରେ ।

ଆମେ ଗୋଟେ ତିନିଜଣିଆ ଦଳ କରିଥିଲୁ ଯେଉଁଥିରେ ଡ଼ା ଶଙ୍କର୍ଷଣ ସାହୁ, ଇଂ କାହ୍ନୁ ଚରଣ ଓ ମୁଁ ଥିଲୁ । ଭଦ୍ରକର ସମାଜସେବୀ ପରେଶ ଭଞ୍ଜ, କେନ୍ଦ୍ରାପଡ଼ାରୁ



ପରିବେଶବିଦ୍ ସନ୍ତୋଷ ଜେନା ପ୍ରମୁଖ ମୋତେ ସ୍ଥାନୀୟ ଅଞ୍ଚଳରେ ସାହାଯ୍ୟ କରିଥିଲେ । ଖାଦ୍ୟ ପଦାର୍ଥର ଆଦାନ ପାଇଁ କଟକର ବ୍ୟବସାୟୀ ସମରେଶ୍ ସ୍ୱାଇଁ ବହୁତ୍ ସାହାଯ୍ୟ କରିଛନ୍ତି । ଏମାନେ ସମସ୍ତେ ନିଜ ନିଜ କ୍ଷେତ୍ରରେ ସାହାଯ୍ୟ କରୁଥିବା ବେଳେ ମୁଁ ବିଭିନ୍ନ ଅଞ୍ଚଳକୁ ଗମନ କରି ସମନ୍ୱୟ ରକ୍ଷା କରିବା ସହିତ ରିଲିଫ୍ ବଣ୍ଟନ ଓ ସ୍ୱାସ୍ଥ୍ୟସେବାର ପ୍ରତ୍ୟକ୍ଷ ତଦାରଖ କରୁଥିଲି ।



ଆମେ ଦେଉଥିବା ରିଲିଫ୍ ସାମଗ୍ରୀ ଗୋଟିଏ ଚାରିଜଣିଆ ପରିବାରକୁ ଅନ୍ତତଃ ସାତଦିନ ପର୍ଯ୍ୟନ୍ତ ବଞ୍ଚାଇ ରଖିବାରେ ସକ୍ଷମ ହୋଇପାରିବ ବୋଲି ବ୍ୟବସ୍ଥା କରିଥିଲୁ । ଆମ ଦଳରେ ଥିବା ସମାଜ ସେବା ପାଇଁ ପ୍ରତିଶୃତିବଦ୍ଧ ଡ଼ାକ୍ତରଙ୍କ ଦଳ ଦ୍ୱାରା ବନ୍ୟାଞ୍ଚଳରେ ରୋଗୀ ମାନଙ୍କୁ ଆଶୁ ଚିକିତ୍ସା ଯୋଗାଇ ଦେବା ସଫଳ ହୋଇ ପାରିଥିଲା । ସେହି ସମୟରେ ଦିନ ଓ ରାତିର ଫରକ୍ ଆମେ ଜାଣି ପାରୁନଥିଲୁ ।

ଆମର ଦିନଚର୍ଯ୍ୟାରେ ପ୍ରତ୍ୟହ ସକାଳ ସାଢ଼େ ପାଞ୍ଚଟାରୁ ବାହାରି ରାତି ସାଢ଼େ ଏଗାର ବାରଟା ସୁଦ୍ଧା ଫେରୁଥିଲୁ । ଏହି ସମୟରେ ବନ୍ୟାଞ୍ଚଳରେ ସହାୟତା ଯୋଗାଇବା ପାଇଁ ଆମେ କେନ୍ଦ୍ରାପଡ଼ାର ମହାକାଳପଡ଼ା, ପାଟକୁରା, ହଳଦିଆପଡ଼ା, ଭଦ୍ରକ ଜିଲ୍ଲାର ଆମନଗର, ଯାଜପୁରର ଦଶରଥପୁର, ବରୀ, ପୁରୀ ଜିଲ୍ଲାର ଗୋପ, ଡ଼େଲାଙ୍ଗ, ବାଙ୍କୀ ଇତ୍ୟାଦି ଅଞ୍ଚଳରେ ରିଲିଫ୍ ବାଣ୍ଟିଥିଲୁ ।



ଆମ ଘର ବନ୍ୟାଞ୍ଚଳରେ ନୁହେଁ । ମୁଁ ବି କେବେ ଏତେ ପାଖରୁ ବନ୍ୟାକୁ ଦେଖିବାର ସୁଯୋଗ ପାଇନଥିଲି । ୨୦୦୮ ମସିହାର ବନ୍ୟାକୁ ମୁଁ କେବଳ ଜାତୀୟ ରାଜପଥ ଉପରୁ ଦେଖିଥିଲି । ସେତେବେଳେ ସେହି ୧୯୮୨

ମସିହାର ବନ୍ୟା ବିଷୟରେ କେବଳ କାହାଣୀ ମାନ ଶୁଣିଥିଲି । ସେତେବେଳେ ପାୱାରବୋଟ୍ ଦେଖି ବନ୍ୟା ବିଷୟରେ ବିଭିନ୍ନ ଚିତ୍ର ମୋ ମାନସ ପଟରେ ଉଙ୍କି ମାରୁଥିଲା ।



ଚଳିତ ବର୍ଷ ବନ୍ୟା ସମୟରେ ବିଭିନ୍ନ ଅଞ୍ଚଳ ବୁଲି ବୁଲି ସହାୟତା ପ୍ରଦାନ କରିବା ମୋ ପକ୍ଷେ ଅନ୍ତତଃ ବହୁତ ଆତ୍ମସନ୍ତୋଷ ଦେଇଥିଲା । ଆମର ପ୍ରଥମ କାର୍ଯ୍ୟକ୍ରମ ଆରମ୍ଭ ହୋଇଥିଲା ସର୍ବବୃହତ୍ ଘାଇ ମଦନଘାଇଠାରୁ । ମଦନଘାଇ ପ୍ରାୟ ୨୦୦ ରୁ ୩୦୦ ମିଟରର ଭାଙ୍ଗି ଯାଇଥିଲା । ସେହି ଅଞ୍ଚଳର ୨୦-୩୦ଟି ଗାଁ ପାଣି ଘେରରେ ରହିଥିଲେ ହେଁ ଡ଼ଙ୍ଗାର କୌଣସି ବି ବ୍ୟବସ୍ଥା ହୋଇନଥିଲା । ଆମେ ସ୍ଥାନୀୟ ଲୋକଙ୍କ ସହାୟତାରେ ସାହାଯ୍ୟ ନେଇ ପାଣି ମଧ୍ୟକୁ ଯାଇ ଲୋକଙ୍କୁ ରିଲିଫ୍ ପ୍ରଦାନ କରିଥିଲୁ । ଆମ ସହ ଯାଇଥିବା ଡ଼ାକ୍ତର ଗୟାଧର ତ୍ରିପାଠୀ ମଧ୍ୟ ପାଣି ଭିତରେ ଚାଲି ଚାଲି ଯାଇ ଲୋକମାନଙ୍କୁ ସ୍ୱାସ୍ଥ୍ୟସେବା ଯୋଗାଇ ଦେଇଥିଲେ ।



ପାଟକୁରା ଅଞ୍ଚଳରେ ଥିବା ସିଙ୍ଗିଟିଆକୁ ଯିବା ରାସ୍ତାରେ ଚଉଡ଼ା ଗର୍ତ୍ତ ହୋଇଯାଇଥିବାରୁ ଚାଲିକରି ଯିବା ଅସୁବିଧା ହେଉଥିଲା, ହେଲେ ସ୍ଥାନୀୟ ଜଣେ ବ୍ୟକ୍ତି ନିଜେ ପାଣିରେ ବୁଡ଼ିରହି ନିଜ କାନ୍ଧରେ ପାଦଦେଇ ଆମକୁ ଅନ୍ୟପାଖକୁ ଯିବାକୁ ସାହାଯ୍ୟ କରିଥିଲେ । ବନ୍ୟା ସମୟରେ ସହାୟତା ବଣ୍ଟନରେ ଦିନରାତି ଲାଗିରହି ଆମ ଦଳର ପ୍ରାୟ ଅଧିକାଂଶ ସଦସ୍ୟଙ୍କୁ ଥଣ୍ଡାଜ୍ୱର ହୋଇଯାଇଥିଲା । ତଥାପି ଜନସେବା ପାଇଁ ଆମ ଦଳରେ ସାମାନ୍ୟତମ ହତୋତ୍ସାହ ଦେଖା ଦେଇନଥିଲା । ଯଦିଓ ଆମେ ଯାଉଥିବା ପାଣିରେ ପଶୁମାନଙ୍କର ମଲା ଶବ ଭାସୁଥିବା ଦେଖି କିଛି ବନ୍ଧୁ ବିଚଳିତ ହୋଇ ପଡ଼ିଥିଲେ । ସେଇ ସମୟ କଥା ମନେ ପଡ଼ିଲେ ଏବେ ବି ଲୋମ ଟାଙ୍କୁରି ଉଠେ । କେନ୍ଦ୍ରାପଡ଼ାରେ ବୁଲୁଥିବା ସମୟରେ ଥରେ ଆମ ଗାଡ଼ି କାଦୁଅରେ ପଶିଗଲା ଆଉ ତାକୁ ବାହାର କରିବା ପ୍ରଚେଷ୍ଟା କରି କରି ଆମେ ସବୁ କାଦୁଅରେ

ପଶିଯାଇଥିଲୁ ।



ଭଦ୍ରକର ଆମନଗର ଅଞ୍ଚଳରେ ବନ୍ୟା ରିଲିଫ୍ ପାଇଁ ଯାଇଥିବା ସମୟରେ ଆମେ ପାଣିରେ ମନୁଷ୍ୟର ଶବ ଭାସୁଥିବା ଦେଖିଥିଲୁ । ଶବ ଉଦ୍ଧାର କରିବା ପାଇଁ ଯାଇଥିବା ଲୋକମାନେ ଶବର ଶରୀରକୁ ଧରିବାପାଇଁ ବି ଭୟଭୀତ ହୋଇ ପଡ଼ିଥିଲେ କାରଣ ଶବ ପୁରା ପଚିସଢ଼ି ଯାଇଥିଲା ।

ଭଦ୍ରକର ଜିଲ୍ଲାପାଳଙ୍କ ସହୃଦୟତାରୁ ଆମେ ଦିନ ସାଢ଼େ ଆଠଟାରୁ ଦିନ ଦୁଇଟା ପର୍ଯ୍ୟନ୍ତ ଗୋଟିଏ ସ୍ଥାନରେ ଠିଆ ଠିଆ ହୋଇ ରହିଗଲୁ । ଦଶଟାରେ ବୋଟ୍ ଟିଏ ଦେବେ ବୋଲି କହି ଦିନ ସାଢ଼େ ଦୁଇଟାରେ ସେ ଆମକୁ ରିଲିଫ୍ ବୋଟଟିଏ ମିଳିଥିଲା ।



ବନ୍ୟା ସମୟରେ ଆମେ ଏପରି ଅଞ୍ଚଳକୁ ବି ଯାଇଥିଲୁ ଯେଉଁଠି ଲୋକମାନେ ଛାତ ଉପରେ ଠିଆ ଠିଆ ଦିନରାତି ବିତାଉଥିଲେ । ଚାରିପାଖରେ ପାଣି ରହିଥିବା ସତ୍ତ୍ୱେ ପିଇବା ପାଇଁ ଟୋପାଏ ପାଣିନଥିଲା । ପାଣି ଗରମ କରି ଫୁଟାଇବା ପାଇଁ ନିଆଁର ବ୍ୟବସ୍ଥା ବି ନଥିଲା । ସେହି ଲୋକମାନଙ୍କ ଆର୍ତ୍ତ ଚିତ୍କାର ବନ୍ୟାଜଳରେ ଉଭେଇ ଯାଉଥିଲା । ଏହା ଉପରେ ଲଗାତାର ବର୍ଷାଯୋଗୁଁ ସେମାନେ ହତାଶ ହୋଇ ପଡ଼ିଥିଲେ । ବନ୍ୟାର ଅନେକ ଦିନ ହୋଇଯାଇଥିଲେ ସୁଦ୍ଧା ସେମାନଙ୍କ ନିକଟରେ କୌଣସି ବନ୍ୟା ସହାୟତା ପହଞ୍ଚିନଥିଲା । ଏହିପରି ଏକ ଅଞ୍ଚଳକୁ ଯିବାବାଟରେ ଅନ୍ୟ ଏକ ଗ୍ରାମର ଲୋକମାନେ ଆମ ନିକଟରୁ ରିଲିଫ୍ ସାମଗ୍ରୀ ଛଡ଼ାଇବାକୁ ଯାଇ ଆମକୁ ମାଡ଼ ବି ମାରିଥିଲେ । ଉପସ୍ଥିତ ପୋଲିସ କର୍ମଚାରୀ ନିରୁପାୟ ହୋଇଯାଇଥିଲେ । ଲୋକମାନେ ଭୋକରେ ଥିବା ହେତୁ ସେମାନଙ୍କ ଉପରେ ଲାଠିଚାର୍ଜ କରିବାକୁ ସେମାନେ ଅମଙ୍ଗ ଥିଲେ ।

ବନ୍ୟାଞ୍ଚଳର ଲୋକମାନେ ଆମ ଆଗରେ କାନ୍ଦି କାନ୍ଦି ନିଜ ଦୁଃଖ ଜଣାଉଥିଲେ । ଆମେ ବିଭିନ୍ନ ଅଞ୍ଚଳରେ ବୁଲି ବୁଲି ଲୋକଙ୍କୁ ରିଲିଫ୍ ପ୍ରଦାନ କରିବା ସମୟରେ ପାୱାର୍ ବୋଟ୍ ବେଳେ ବେଳେ ବାଟ ହୁଡ଼ିଯାଉଥିଲା । ଥରେ ଆମେ ଭଦ୍ରକ ଜିଲ୍ଲାର ସୋହଡ଼ା

ପଞ୍ଚାୟତ ବାଟ ଭୁଲି ଯାଇପାରିନଥିଲୁ ହେଲେ ସ୍ଥାନୀୟ ସ୍ୱେଚ୍ଛାସେବୀ ପରେଶ ଭଞ୍ଜଙ୍କ ସହାୟତାରେ ଆମ ଦଳ ସେହି ଗ୍ରାମରେ ପହଞ୍ଚିବାରେ ସକ୍ଷମ ହୋଇଥିଲା । ସନ୍ଧ୍ୟା ସାଢ଼େ ସାତ ଟାରେ ଆମେ ସେହି ଗାଁରେ ପହଞ୍ଚି ରିଲିଫ୍ ବାଣ୍ଟିଥିଲୁ । କାର୍ଯ୍ୟକ୍ରମ ସରୁ ସରୁ ସାଢ଼େ ଆଠଟା ହୋଇଗଲା ଆଉ ପାଓ୍ୱାର ବୋଟ୍ ଚାଳକ ବୋଟ୍ ଚଳାଇବାକୁ ମନା କରିଦେଲା । ସ୍ଥାନୀୟ ଯୁବକ ମାନେ ଆମକୁ କିଛିବାଟ ନେଇ ଆସିଲେ ହେଲେ ଭଗବାନଙ୍କ ଦୟାରୁ ସେହି ସମୟରେ ସ୍ଥାନୀୟ କିଛି ଲୋକ ଏକ ଡ଼ଙ୍ଗାନେଇ ଆସି ଆମକୁ ଆମ ଗାଡ଼ି ପାଖରେ ପହଞ୍ଚାଇ ଦେଇଥିଲେ । ପ୍ରାୟ ପନ୍ଦର ଫୁଟ ଉଚ୍ଚ ପାଣି ଉପରେ ଦେଶୀ ଡ଼ଙ୍ଗାରେ ବସି ରାତିର ଅନ୍ଧକାରରେ ଯାତ୍ରା କରିବାର ଭୟ କେବଳ ଅନୁଭବ କଲେ ହିଁ ଜାଣିବେ, ତେଣେ ଡ଼ଙ୍ଗା ଭିତରକୁ ବାରମ୍ବାର ପାଣି ଆସିଯାଉଥିବା ହେତୁ ତାକୁ ବାହାର୍ କରିବାକୁ ପଡୁଥିଲା, ବନ୍ୟା ଜଳର ଘନଘର୍ଘର ନାଦ ଆମ ହୃଦ୍‌ସ୍ପନ୍ଦନକୁ ବଢ଼ାଇ ଦେଉଥିଲା ।

ଡ଼ଙ୍ଗାର ଭୟଙ୍କର ହଲିବା ଦେଖି ଆମ ଭିତରେ ଥିବା ସ୍ୱେଚ୍ଛାସେବୀ ମାନେ ଭୟଭୀତ ହୋଇ ନିଜ ନିଜ ଘରକୁ ଫୋନ କରିଦେଇଥିଲେ, ସମ୍ଭବତଃ ଏହା ସେମାନଙ୍କ ଜୀବନର ଶେଷ କଥା ହୋଇପାରେ ଭାବି, ଏହା ଆମ ସମସ୍ତଙ୍କୁ ବ୍ୟଥିତ କରିଥିଲା । ହେଲେ ସେହି ଡ଼ଙ୍ଗାଚାଳକ ମାନଙ୍କ ସାହାସ ଯୋଗୁଁ ଆମେ ପ୍ରାୟ ଦେଢ଼ ଘଣ୍ଟା ପରେ ସ୍ଥଳଭାଗ ଦେଖିବାକୁ ପାଇଥିଲୁ । ସେଦିନ ଯଦି ଡ଼ଙ୍ଗା ମିଳିନଥାନ୍ତା ଆମେ ଭୁବନେଶ୍ୱର ପହଞ୍ଚିପାରିନଥାନ୍ତୁ, ଆଉ ଯଦି ମିଳିଥିବା ଡ଼ଙ୍ଗା ଲେଉଟି ପଡ଼ିଥାନ୍ତା ତାହେଲେ ଆମକୁ କେହି ବି ରକ୍ଷା କରି ପାରିନଥାନ୍ତେ । ସବୁ ଭଗବାନଙ୍କ ନିର୍ଦ୍ଦେଶରେ ଯେମିତି ହେଉଥିଲା । ଭଗବାନଙ୍କ କୃପାରୁ ବନ୍ୟାପରବର୍ତ୍ତୀ ରିଲିଫ୍ ବଣ୍ଟନ କାମ ସୁରୁଖୁରୁରେ ହୋଇଗଲା ।

ଏହି ସବୁ ଅନୁଭୂତି ବ୍ୟତୀତ ମଧ୍ୟ ଆହୁରି ଅନେକ ଅନୁଭୂତି ରହିଛି । ସେହି ସବୁ ଅନୁଭୂତିକୁ ଲେଖି ଜଣାଇବା ପାଇଁ ସମୟର ଅଭାବ ରହିଛି, ବୋଲି ମାତ୍ର କେଇଟା ଅନୁଭବ ଲେଖି ଜଣାଇଲି । ଧନ୍ୟବାଦ ।



# ତୁ ମୋ ମା ଓଡିଶା ...

ପ୍ରଶାନ୍ତ କୁମାର ଭୂୟାଁ

ଦେଖିଛି ତୋତେ ମୁଁ ମହାନଦୀ ଧାରେ , କୋଣାର୍କ ପଥର ଦେହ ରେ
ଖୋଜିଛି ତୋତେ ମୁଁ ସୁନାମୀ ଦାଉ ରେ , ଦୟା ନଦୀ ରକ୍ତ ସୁଅରେ

ଭାବିଛି ତୋ କଥା ପଦୁଅଁ ତୁଠ ରେ , କିଆ କେତକୀ ର ବେଳା ରେ
ଭାସିଛି ତୋ ପାଇଁ ଚିଲିକା ଢ଼େଉ ରେ , ସାତ କୋଶିଆ ଗଣ୍ଡ ରେ

ଖେଳିଛି ତୋ ପୁରୀ ସମୁଦ୍ର ବେଳା ରେ , ବୁଲିଚି ନନ୍ଦନ କାନନେ
ବୁଲିଛି ଭିତର କନିକା ଜଂଗଲେ, ଭାସିଚି ଅଠର ନଳା ରେ

ହେରିଛି ତୋ  କଳା ତାରକସି ଗୁଣେ, ପିପିଲି ର ରଙ୍ଗ ଚାନ୍ଦୁଆ ରେ
ଝୁରିଛି ତୋତେ ମୁଁ ବାରଶ ବଢ଼େଇ , କଳା ପାହାଡ଼ ର ଧ୍ୱଂସ  ରେ

ଖାଇଛି ମୁଁ ରସଗୋଲା ଛେନାପୋଡ଼,  ଆଡ଼ିଶା କାକରା ପୁଳୀ କୁ
ରାନ୍ଧିଛି ଆମ୍ବିଳା କାଞ୍ଜି ଓ  ସନ୍ତୁଳା  ଡାଲମା ବେସର ବଟା କୁ

ମାତିଛି  ଯେ ରଥ ଯାତରା  ଭିଡ଼ରେ,  ହୋଲି ଦୋଳ ଦିପାବଳୀ ରେ
ଭାଙ୍ଗିଛି କନ୍ଦଳ ଭାଇ ଭାଗାରୀ ରେ , ସାହି ପଡ଼ିଶା ର ଦ୍ୱନ୍ଦ ରେ

ହଜାଇଛି ନିଜେ , ନିଜର ବ୍ୟଥା କୁ ଯୁଗେ ଯୁଗେ ଦେଖି ତୋ ଦୁଃଖ କୁ
ପଠାଇଛି ବାରତା ଏ ମରମ କଥା , ତୋହରି ସନ୍ତାନ ମାନଙ୍କୁ

ବୁଝେଇଛି ତୋର ପୂରୁବ ର ଶିରୀ , କଥା ଗୌରବ ଗାଥା କୁ
ଦେଖାଉଛି ତୋର ବୀର ସନ୍ତାନ ରେ , ତୋର ହୃଦ ମନ ବ୍ୟଥା କୁ

କହୁଛି ତୋତେ ମୁଁ , ତୁ ମୋ ସଂସାର , ତୁ ମୋ ମା ଓଡ଼ିଶା
ଲେଖୁଛି ତୋ ଗୁଣ , ସରୁ ନାହିଁ କଥା , କେହି ନୁହେଁ ତୋର ସରିଶା ...



# ଭୂୟାଁ ବାବୁଙ୍କ ରୋଷେଇ ଘରୁ .....

ପ୍ରଶାନ୍ତ କୁମାର ଭୂୟାଁ

ଆସନ୍ତୁ !!! ଏହି ଥର ବୋଇତ ବନ୍ଦାଣ ଉତ୍ସବ ର ପରିପ୍ରେକ୍ଷୀ ରେ , ଓଡିଆ ଘର ର ୩ ଗୋଟି ରନ୍ଧା ପ୍ରଣାଳୀ ଶିଖିବା ।

## ଡାଲମା :



ପ୍ରଥମେ , ଗୋଟିଏ କପ ମୁଗଡ଼ାଲି ଭଲ ଭାବେ ଧୋଇ / ଶୁଖାଇ ରଖନ୍ତୁ ।

କଡ଼ାଇ କୁ ଚୁଲ୍ଲା ଉପରେ ମଧ୍ୟମ ତାପମାନରେ ରଖି ସେଥିରେ ୧/୨ ଚାମଚ୍ ଡାଲ୍‌ଡ଼ା କିମ୍ବା ଗୁଆଘିଅ ପକାନ୍ତୁ ।

ଘିଅ ଗରମ ହେଲା ପରେ ସେଥିରେମୁଗଡାଲି ପକାଇ ଭଲଭାବେ ଭାଜି ଦିଅନ୍ତୁ ଏବଂ ପୋଡ଼ିବାକୁ ଦିଅନ୍ତୁ ନାହିଁ । ସେଥିରେ ୨/୩ କପ୍ ଗରମ ପାଣି ଏବଂ ଅଧ ଚାମଚ୍ ହଳଦୀ ଗୁଣ୍ଡ ପକାନ୍ତୁ ।

କଢାଇ ରେ ଢ଼ାଙ୍କୁଣୀ ଘୋଡାଇ ତାକୁ ୭/୧୦ ମିନିଟ୍ ଶିଝିବାକୁ ଦିଅନ୍ତୁ ।

ଡ଼ାଲି ଶିଝି ଆସିବା ପରେ ସେଥିରେ କଟା ପରିବା ଓ ଆବଶ୍ୟକ ଅନୁସାରେ ଲୁଣ ପକାନ୍ତୁ । (କଟା ପରିବା : କଞ୍ଚା କଦଳୀ, ବୋଇତାଳୁ (ବୋଇତି କଖାରୁ), ବାଇଗଣ ଏବଂ ଆଳୁ ୨/୩ ସେମି ଲମ୍ବା ଏବଂ ଆଙ୍ଗୁଠି ମୋଟାରେ କାଟନ୍ତୁ - ଯଦି ଆପଣ ଚାହାନ୍ତି ତାହା ହେଲେ ଅନ୍ୟ ପରିବା ମଧ୍ୟ ପକାଇ ପାରନ୍ତି )

ସେଥିରେ କୋରା ଯାଇଥିବା ନଡ଼ିଆ ଦେଲେ ତାହା ଅତି ସୁଆଦିଆ ଲାଗିବ ।

ବର୍ତମାନ ସେଥିରେ ପୁର୍ବରୁ ଭାଜି ଏବଂ ଗୁଣ୍ଡ କରି ରଖିଥିବା ତାଜା ମସଲା ପକାନ୍ତୁ (ତାଜା ମସଲା - [ଗୋଟିଏ ଚାମଚ୍ ଜୀରା + ୨/୩ ଟି ଶୁଖିଲା ଲଂକା ମରିଚ] ଟିକିଏ ଭାଜି ଗୁଣ୍ଡ କରି ରଖନ୍ତୁ ) ।

ମୁଗ ଡ଼ାଲି ଏବଂ ପରିବା ଶିଝି ଗଲା ପରେ ତାକୁ ଅଲଗା ରଖନ୍ତୁ ।

ଅନ୍ୟ ଏକ କଡ଼ାଇ ରେ ଟିକେ ଘିଅ  ନେଇ ସେଥିରେ ଜୀରା , ସୋରିଶ , ତେଜପତ୍ର ଓ ଶୁଖିଲା ଲଂକା ଫୁଟାନ୍ତୁ (କଟା ପିଆଜ ମୁଁ ସାଧାରଣତଃ ପୁଜାପାର୍ବଣ ଦିନ ରେ ପକାଏ ନାହିଁ ) ।

ଏହି ଫୁଟଣ ରୁ ସୁଗନ୍ଧ ଆସିଲା ପରେ ସେଥିରେ ସିଝା ଡ଼ାଲି କୁ ଢ଼ାଳି ଦିଅନ୍ତୁ ।

ଆପଣଙ୍କ  ଡ଼ାଲମା ବର୍ତମାନ ପ୍ରସ୍ତୁତ ହୋଇଗଲା ।



## ସାକରା :

ପ୍ରଥମେ , ଅଧା କପ ତେନ୍ତୁଳି ରସ  ଭଲ ଭାବେ  ସଂଗ୍ରହ କରି ରଖନ୍ତୁ ।

କଡ଼ାଇକୁ ଚୁଲ୍ଲା ଉପରେ ମଧ୍ୟମ ତାପରେ ରଖି  ସେଥିରେ ୧/୨ ଚାମଚ୍ ଡାଲଡ଼ା କିମ୍ବା ଗୁଆଘିଅ ପକାନ୍ତୁ ।

ଘିଅ ଗରମ ହେଲା ପରେ ସେଥିରେ ଅଧା କପ ତେନ୍ତୁଳି ରସ ,୨ କପ୍ ଗରମ ପାଣି ଏବଂ ୨/୩ ଚାମଚ୍ ଗୁଡ଼ ପକାଇ ଦିଅନ୍ତୁ ।

କଡ଼ାଇ ରେ ଢ଼ାଙ୍କୁଣି ଘୋଡାଇ ତାକୁ ୭/୧୦ ମିନିଟ୍ ଭଲଭାବେ ଶିଝିବାକୁ ଦିଅନ୍ତୁ ।

ତାହା  ଶିଝି ଆସିବା ପରେ ସେଥିରେ କଟା ପରିବା ଓ ଆବଶ୍ୟକ ଅନୁସାରେ ଲୁଣ ପକାନ୍ତୁ ।

(କଟା ପରିବା : ମୂଳା, ବୋଇତାଳୁ, ବାଇଗଣ , ଭେଣ୍ଡି ଏବଂ କଂଚା ଅମୃତଭଣ୍ଡା ୫/୬ ସେମି ଲମ୍ବା ଏବଂ ଆନଗୁଠି ମୋଟା  ରେ କାଟନ୍ତୁ )

ପରିବା ସିଝି ଗଲା ପରେ ତାକୁ ଅଲଗା ରଖନ୍ତୁ ।

ଅନ୍ୟ ଏକ କଡ଼ାଇରେ ଟିକେ ଘିଅ  ନେଇ ସେଥିରେ ଜୀରା , ସୋରିଶ , ତେଜପତ୍ର, ପାନ ମଧୁରୀ, ଭୃସଙ୍ଗ ପତ୍ର  ଓ ଶୁଖିଲା ଲଂକା ଫୁଟାନ୍ତୁ ।

ଏହି ଫୁଟଣ ରୁ ସୁଗନ୍ଧ ଆସିଲା ପରେ ସେଥିରେ ସିଝା ମିଶ୍ରଣ  କୁ ଢ଼ାଳି ଦିଅନ୍ତୁ ।

ଆପଣଙ୍କ  ସାକରା ବର୍ତମାନ ପ୍ରସ୍ତୁତ ହୋଇଗଲା ।

# ଆମ୍ବିଳ :



ପ୍ରଥମେ , ଗୋଟିଏ କପ ରେ ୨/୩ ଚାମଚ୍ ସୋରିଶ +୧ ଚାମଚ୍ ଜୀରା +୨/୩ ଟି ଶୁଖିଲା ମରିଚ + ୩/୪ ଟି ରସୁଣ କୋଳ ଭଲ ଭାବେ ୧ ଘଣ୍ଟା ବତୁରାଇ ଏବଂ ପରେ ଗ୍ରାଇଣ୍ଡ୍ କିମ୍ବା କୁଟି ରଖନ୍ତୁ ।

କଢାଇ କୁ ଚୁଲ୍ଲା ଉପରେ ମଧ୍ୟମ ତାପମାନ ରେ ରଖି ସେଥିରେ ଗ୍ରାଇଣ୍ଡ୍ ହୋଇଥିବା ମିଶ୍ରଣ କୁ ପକାନ୍ତୁ । ସେଥିରେ ୨/୩ କପ୍ ଗରମ ପାଣି ,ଅଧ ଚାମଚ୍ ହଳଦୀ ଗୁଣ୍ଡ ଏବଂ ୩/୪ ଟି ଆମ୍ବୁଲ ଆପନଂକ ଦରକାର ଆମ୍ବିଲା ଅନୁସାରେ ନିଅନ୍ତୁ । ପକାନ୍ତୁ । କଢାଇରେ ଢ଼ାଙ୍କୁଣୀ ଘୋଡ଼ାଇ ତାକୁ ୭-୧୦ ମିନିଟ୍ ଶିଝିବାକୁ ଦିଅନ୍ତୁ ।

ଏହା ଶିଝି ଆସିବା ପରେ ସେଥିରେ କଟା ପରିବା ଓ ଆବଶ୍ୟକ ଅନୁସାରେ ଲୁଣ ପକାନ୍ତୁ । (କଟା ପରିବା : ବୋଇତାଳୁ, ବାଇଗଣ ,ସାରୁ ,ଭେଣ୍ଡି ୪ /୫ ସେମି ଲମ୍ବା ଏବଂ ଆନଗୁଠି ମୋଟା ରେ କାଟନ୍ତୁ ) ଏଥିରେ ୫/୬ ଘଣ୍ଟା ପୂର୍ବରୁ ବତୁରା ଯାଇଥିବା ଝଟା (ଶିମ୍ବ) ମଂଜି ମଧ୍ୟ ପକାନ୍ତୁ ।

ପରିବା ଶିଝି ଗଲା ପରେ ତାକୁ ଅଲଗା ରଖନ୍ତୁ । ଅନ୍ୟ ଏକ କଢାଇରେ ଟିକେ ରିଫାଇନ୍ ତେଲ ନେଇ ସେଥିରେ ଜୀରା , ସୋରିଶ, ମେଥୀ, ପାନ ମଧୁରୀ, କଟା ପିଆଜ ଓ ଶୁଖିଲା ଲଂକା ଫୁଟାନ୍ତୁ । ଏହି ଫୁଟଣରୁ ସୁଗନ୍ଧ ଆସିଲା ପରେ ସେଥିରେ ସିଝା ପରିବାକୁ କଢାଇ ରେ ଢ଼ାଳି ଦିଅନ୍ତୁ ।

ଆପଣଙ୍କ ଆମ୍ବିଳ ବର୍ତ୍ତମାନ ପ୍ରସ୍ତୁତ ହୋଇଗଲା ।







# ଭାସିଯାଆ ମୋର କଦଳୀ ଡ଼ଙ୍ଗା

ବ୍ୟଙ୍ଗକବି ସତ୍ୟାନାଶ

ଭାସିଯାଆ ମୋର କଦଳୀ ଡ଼ଙ୍ଗା ଭାସିଯାଆ
ଡ଼ରିଯିବୁ ନାଃଇଁ ଆକାଶରୁ ଶୁଣି ଭୁଉଁଭାଆଁ,
ହେଲିକେପ୍ଟରରେ ଯାଉଥିବେ ମନ୍ତ୍ରୀ ମନ୍ତ୍ରିଆଣୀ
ଦେଖିଲେ ସିନେରି ଭାଷିବେ ଟିଭିରେ ଶୋକବାଣୀ ॥

କାର୍ତ୍ତିକମାସେ ତୋଫାନ୍ ଆସିଲା ଦରିଆରେ
ଅଧାଜନସଂଖ୍ୟା କମେଇଲା ଏକା ଥରକରେ,
କି ସୁନ୍ଦର ଦିଶେ ପାରାଦ୍ୱୀପ ଆଉ ଏରସମା
ଦେଖିଦେଲେ ଭୋକ ଶୋଷ ଲାଗିବନି ଆଉ ଜମା,
ବାତ୍ୟା ଛାଡ଼ିଲାଣି ଖରା କରେ ଆଖି ମିଟି ମିଟି
ମହ ମହ ପଚାବାସନା ପବନେ ଆସେ ଛୁଟି,
ଗାଁ ଦିଶୁଅଛି ତାଳପତ୍ର ଘୋଡ଼ା ମାଟିଗଦା
ଅଭାବ ନାହିଁ ତ ଜାଳକାଠ ଆଉ ଝାଡ଼ାପଦା,
ହାତ ପାହାନ୍ତାରେ ନଡ଼ିଆ ପଇଡ଼ ଗାଡ଼ି ଗାଡ଼ି
ଗଛମାନେ ସବୁ ଶୋଇଛନ୍ତି ତଳେ ମୁହଁ ମାଡ଼ି ॥

ଭାସିଯାଆ ମୋର କଦଳୀ ଡ଼ଙ୍ଗାରେ ଯାଆ ଭାସି
ଦେଖିଲେ ତୋ ପେଟ ପୁରିଯିବ ମନ ହବ ଖୁସି,
ଖାଇବୁ ବାଟରେ ରଖିଛି ତୋ ପାଇଁ ପାନ ଗୁଆ
ଆ..କା..ମା.. ବଇ ଗୀତ ଶୁଣି ଶୁଣି ଭାସି ଯାଆ ॥

ମାଛଗାଁ କୁଜଙ୍ଗ ଜଗତ୍ସିଂହପୁର ବାଲିକୁଦା
ଶୋଭା ଦେଖି ଦେଖି ହୋଇଯିବ ତୋର ମନବୋଧା,
ପ୍ରଣାମ କରୁଛି ଇଲେକ୍ଟ୍ରି ଖୁଣ୍ଟ ନଇଁପଡ଼ି
ଭାଙ୍ଗିଦେଇଛି ତା ଗରବକୁ ଝଡ଼ ବେକ ମୋଡ଼ି,
ଚିତି ପହଁରା ଦେଉଛନ୍ତି ଗାଈ ଗୋରୁ ମାନ

ଗୋଟିକିଆ ଘର ଭିତରେ ଦିଶୁଛି ତୋଫା ଜହ୍ନ,
ଶୁଭୁନାହିଁ ଆଉ ବୁଲା କୁକୁରଙ୍କ ଭେଏଁ ଭାଆଁ
ଚାରିଆଡ଼େ ଖାଲି ରିଲିଫ ଗାଡ଼ିର ପେଏଁ ପାଆଁ,
ଛଟଙ୍କାର ଘୋଡ଼ା ଚୋକଡ଼ ଖାଉଛି ନ ଟଙ୍କାର
ଦି କେଜି ଚୁଡ଼ାକୁ ଡିଜଲ୍ ପୋଡୁଛି ଦି ହଜାର ॥

ଯାଇଛି ଯେ କାଳ ଆସିଛି ରେ ଏବେ ଖାଉବେଳା
ପାରାଦ୍ୱୀପେ ଆସି ଲାଗଇ ରିଲିଫ ଭେଳା ଭେଳା,
ଚାଉଳ, ଗହମ, ସୁଜି, ଚୁଡ଼ା, ଚିନି କିରାସିନି
କ୍ଷୀରଗୁଣ୍ଡ ଆଉ ଡ୍ରେସ୍ କମ୍ବଳ ପଲିଥିନି ॥

ଆମ ପୁଲିସିଙ୍କ ପରି କିଏ ହେବ ପାରିବାର
ଝଡ଼ ତୋଫାନକୁ ତାହାଙ୍କର ନାହିଁ ତିଳେ ଡ଼ର,
ଭ୍ୟାନରେ ଭରି ରିଲିଫ ଜିନିଷ ମିଳିମିଶି
ଫେରୁଛନ୍ତି ଘରେ ଦରିଆକୂଳରୁ ହୋଇ ଖୁଶି,
ମୂର୍ଚ୍ଛାର ଦେହରୁ ଆଣୁଚି କେ ଚୁଡ଼ି ସୁନାମାଳି
ଝିଅ ମାଇକିନା ସଜେଇ ହେବାକୁ ଭଳି ଭଳି,
ଭାରୀ ସଚ୍ଚୋଟିଆ ଆମର ରିଲିଫ ଅଫିସର
ସିବିଆଇ ଖାଲି ମିଛରେ କରୁଛି ହରବର,
ଖାଇଛି କମ୍ବଳ ବିକିଛି ବୋଲି ସେ ପଲିଥିନି
ବିରୋଧିଆ ଯେତେ ତୁଚ୍ଛାରେ କରନ୍ତି ଘୋରଧ୍ୱନି ॥

ଧନ୍ୟ ଏ ଓଡ଼ିଶା ଧନ୍ୟ ଆମ ଦଣ୍ଡା ସରକାର
ଏମିତି ସର୍କାର ସବୁବେଳେ ଆମ ଦରକାର,
ହଉ ଭୂମିକମ୍ପ ବନ୍ୟା ମରୁଡ଼ି କି ଆସୁ ଝଡ଼
ଜମା ଚିନ୍ତା ନାହିଁ ଶୁଭୁଥିବ ଯଦି ଚାଙ୍ଗୁମାଡ଼,
ମନ୍ତ୍ରୀ ଏମେଲେ ଚବିଶି କ୍ୟାରେଟ୍ ଖାଣ୍ଟି ସୁନା
ଜନସେବା ପାଇଁ ଭୁଲିଛନ୍ତି ପିଲା ମାଇକିନା,

ଜନସେବା ଲାଗି କାନ୍ଦନ୍ତି ଟିଭିରେ ଛାତି କୋଡ଼ି
ଜନସେବା ଲାଗି ଆସେମ୍ବ୍ଲି ଟେବୁଲ୍ ବାଡ଼ା ବାଡ଼ି,
ଜନସେବା ଲାଗି ଭୁଲିପାରନ୍ତି ସେ ମଳମୂତ୍ର
ଜନସେବା ସିନା ତାଙ୍କ ଜୀବନର ମୂଳମନ୍ତ୍ର,
ଜନସେବା ପାଇଁ ମନ୍ତ୍ରୀ ଆସନଟା ବଡ଼ କଥା
ଏ ଛାର ବାତ୍ୟାକୁ ଭାବି କିଆଁ ହେବ ମୁଣ୍ଡବ୍ୟଥା,
ତେଣୁ ଜନସେବା ପାଇଁ ହଉଚନ୍ତି ବାଡ଼ାବାଡ଼ି
ଜନସେବା ପାଇଁ ହଉଛନ୍ତି କଛା ଭିଡ଼ାଭିଡ଼ି ॥

ଭାସିଯାଆ ମୋର କଦଳୀ ଡ଼ଙ୍ଗା ଭାସି ଯାଆ
ଦେଖିବୁ କେମିତି ମଜା ମାରୁଛନ୍ତି ଚାକିରିଆ,
ଭୁଉଲୁରେ ଗାଆଁ ନାଆଁ ନ ଧରଇ ଯିଏ ତୁଣ୍ଡେ
ରିଲିଫ ଲୋଭରେ ସେ ଆସି ବସିଛି ଗାଆଁ ମୁଣ୍ଡେ,
ମାଆ ମଲା କଥା ଶୁଣି ବହିନାହିଁ ଯାର ଲୁହ
ସେ ଆସି କହୁଛି-ବୋପାମଲା ଟଙ୍କା ବେଗେ ଦିଅ,
ଖତରା ଚାଳକୁ ଘରେ ଯାର ପଣେ ମୂଷାଗାତ
ସେ ଆସି କହୁଛି-ଉଡ଼ିଗଲା ମୋର ଘର ଛାତ ॥

ଆରାଇ ବାବୁର ଏବେ ପଞ୍ଚମରେ ବୃହସ୍ପତି
ବଟି ପଇସାରେ ଝିଅ ବାହାଘର ଭାରିମସ୍ତି,
କଲମ ତାଙ୍କର ଏବେ ଲକ୍ଷ୍ମୀଙ୍କର ଅବତାର
ତାଳ କୁଡ଼ିଆକୁ ଲେଖିପାରନ୍ତି ସେ ଛାତଘର,
ବଟି କମିଶନ୍ ଆସିବାରେ ଯଦି ହେଲା ବାଧା
କୋଠାଘରକୁ ସେ ରାଗରେ ଲେଖନ୍ତି ଡ଼ିହିପଦା,
ସେଣ୍ଟର ଟଙ୍କାରେ ଏବେ ଚାକିରିଆ ମାଲାମାଲ୍
ରାଧେ ରାଧେ କରୁଣାରୁ ବନିଲେଣି ଗୋଲଗାଲ,
ପ୍ରଭୁଙ୍କ ଦୟାରୁ ବାତ୍ୟା ହୁଅନ୍ତା କି ସବୁବେଳେ
ପଇସା ଅଭାବ ନ ରହନ୍ତା ଆଉ କାଳେ କାଳେ ॥

ନିଶ ମୋଡୁଛନ୍ତି ଇଞ୍ଜିନିୟରକୁ କଣ୍ଟ୍ରାକ୍ଟର
ଗ୍ରାଆଣ୍ଟ ଆସିଲା କରିବାକୁ ରାସ୍ତା ଶଙ୍ଖପୋଲ,
ସ୍ୱେଚ୍ଛାସେବୀ ନାମେ ଶୋଷୁଛନ୍ତି ଯିଏ ଲୋକପାଣ୍ଠି
ନାଆଁ କମେଇବା ପାଇଁ ସେ ଧାଆନ୍ତି ପଡ଼ି ଉଠି,
ଭିଡ଼ିଓ ସୁଟିଙ୍ଗ ଫୋଟୋ ଉଠା ଖାଲି ଚାରିଆଡ଼େ
ବାହାଦୁରିଆଏ ଭାଷଣ ମାରନ୍ତି କେଡ଼େ କେଡ଼େ,
ପେପର ବାଲାଙ୍କ ପେପର କାଟତି ଗଲା ବଢ଼ି
ଲୋକ ଲଗେଇକି ଗଣତି କଲେ ସେ ଡ଼େଡ଼୍ ବଢ଼ି ॥

ବାତ୍ୟା ଉପରେ କବିତା ଆସର କି ସୁନ୍ଦର
ଦଳେଇ ଘାଇରେ ଆୟୋଜନ କଲେ ପୀତାମ୍ବର,
ଟିଭି ପର୍ଦ୍ଦାରେ ବାତ୍ୟାର ଛବି ଦେଖୁ ଦେଖୁ
ଆଧୁନିକ କବି ସୃଷ୍ଟିହେଲେ କେତେ ଲେଖୁ ଲେଖୁ,
ପୀତାମ୍ବ୍ର ତରେଇ ଅରୁଣ ଗିରିଜା ଶ୍ରୀ ଚନ୍ଦନ
ବାତ୍ୟା କବିତା ଲେଖି ଡ଼ାଇରିକି କଲେ ପୂର୍ଣ୍ଣ,
ଏମିତି ତୋଫାନ୍ ମଝିରେ ମଝିରେ ଆସୁଥାଉ
ଓଡ଼ିଆ ପୁଅକୁ ଲେଖିବା ପ୍ରେରଣା ଦେଉଥାଉ ॥

ଭାସିଯାଆ ମୋର କଦଳୀ ଡ଼ଙ୍ଗାରେ ଯାଆ ଭାସି
ଗୁଆପାନ୍ ଥୋଇ ଭସେଇଲି ତତେ ହସି ହସି,
ଫୁଲବାଣୀରେ ପଡ଼ିଲାଣି ଏବେ ଭାରୀ ଶୀତ
ଆଣିଥିବୁ ମାଗି ଫରେନ୍ କମ୍ବଳ ଛଅ ସାତ,
ଆଣିବୁ ମିଳିଲେ ବଡ଼ ଦରି ଆଉ ପଲିଥିନ
ଭାରୀ ଭଲ ହେବ ପିକ୍‌ନିକ୍ କବି ସମ୍ମିଳନୀ,
ଭାସିଯାଆ ମୋର କଦଳୀ ଡ଼ଙ୍ଗାରେ ଭାସିଯାଆ
ବାଟ ଯାକ କେତେ ରୋମାଣ୍ଟିକ୍ ସିନ୍ ଦେଖୁଥାଆ ॥



# ପାଗଳ

ସୁଜିତ କୁମାର ସାହୁ

ଦୁନିଆ ମୋତେ ପାଗଳ କହୁଛି..,
ମୁଁ ତ ସବୁଠୁ ଖୁଶିରେ ଅଛି ..!
ମୋ ନିଜ ପାଇଁ ସ୍ୱପ୍ନ ଦେଖୁଛି
ଭଲ କଣ, ମନ୍ଦ କଣ, ସବୁକୁ ସମାନ ଦେଖୁଚି,
ଆଜି ମୁଁ ଏଠି ବସୁଛି, କାଲି ମୁଁ ସେଠି ବୁଲୁଛି,
ମୁଁ ବି ଖାଉଚି, କିଛି ପେଟ ପାଇଁ, କିଛି ଖୁଶି ପାଇଁ,
ମୁଁ ବି ଗପୁଚି, କେତେ ଗୀତ ଗାଉଚି,
ତଥାପି ଦୁନିଆ ମତେ ପାଗଳ କହୁଚି...
ସବୁଠୁ ବଡ଼ କାମ କରୁଚି,
ମଣିଷକୁ ମୋ ଚରିତ୍ର ଦେଖାଉଛି... ଯେ ମୁଁ ପାଗଳ୍..!!!

---

## ସୌମ୍ୟ ସାରସ୍ୱତ ଦାଶ

ରୂପଚର୍ଯ୍ୟା ତୁମ ରଉତୁର ରମଣ
ତେଣୁ ଗୋ ତୁମେ ରୂପସୀ
ମୁଖକାନ୍ତି ତୁମ ମଧୁମାଳତି ଗୋ
ଆଜି ସଜ କାଲି ବାସି...

ଏ ଜୀବନ ଗୋଟେ ଜଳର ତରଙ୍ଗ
ଜୁଆର ଓ ଭଟ୍ଟା ସହେ,
ଯୌବନ ଆହା ଜହ୍ନରାତି ପରି
କ୍ଷଣିକରେ ସରିଯାଏ ...







# ଚୋରଘରେ ପୁଲିସି

ହାସ୍ୟକବି କୂଳାଙ୍ଗାର

ଅନ୍ଧାର ରାତିରେ
ଚୋର ଘରେ ଦେଖାହେଲା
ପୁଲିସି ସାଥୀରେ ।

ନିଶ ତା'ର ଠିଆ ଠିଆ କରି
ପୁଲିସି ପଚାରିଲା-
ରେ...ଶଃ...
ଏଠି ଲଗେଇଛୁ କି ଲୀଳା ?
ମୁଁ କହିଲି ହୋ ପୁଲିସି
କଥା କର ସଂଜତ;
ଜଣା ମୋତେ କେତେ ଟଙ୍କା
ଅଟେ ତମ ପିତ୍ତ ।

ପୁଲିସି କହିଲା ଦେଖିବୁ ଏଇନେ
ଦେବି ଦି' ପାହାରେ;
ମୁଁ କହିଲି ଗୋଟେ ଫୋନ୍ କରିବି ତ'
ଦି'ଥର ବସ୍ ଉଠ୍ ହେବେ
ତମ ସାଆରେ ।

ତୁ କୋଉ ଥାନାରେ ଅଛୁ,
କେତେ ଇଲିସି ଖାଉଚୁରେ
ପେଟଟା ପୋଖରୀ ପରି କରିଚୁ ?
କାହାକୁ କଣ କହୁଚୁ

ଜାଣି ପାରୁନୁ କିଛି,
ମୁଁ ପରା ସର୍କାରୀ ଦଳର ନେତା
ଦି'ଦିନ ହେଲା ଜଏନ୍ କରିଛି ।

ପୁଲିସି କହିଲା-ସାର୍
ସରି ସରି କ୍ଷମା କରିଦେବେ;
ମୁଁ ଭାବିଥିଲି ଆପଣ
ସାଧାରଣ ଜନତା ହୋଇଥିବେ !
ହେଲେ ସାର୍ ଆପଣଙ୍କର
ଏଇଠି କି' କାମ;
ଏଇଟା ଚୋର ଖଣ୍ଟ ଘର
ତୁଛାରେ ହେବେ ବଦନାମ୍ !

ମୁଁ କହିଲି- ଯେହେତୁ
ଦଳରେ ନୂଆକରି ଜଏନ୍ କରିଛି;
ହାଇକମାଣ୍ଡଙ୍କ ନିର୍ଦ୍ଦେଶରେ
ଏଠି ନିତି ତାଲିମ୍ ନେଉଚି !
ଆଛା କନିଷ୍ଠବଳ ଭାଇ
ତମେ ଏଠି କ'ଣ ପାଇଁ ?

ଏବେ ଖଣ୍ଡିକାସ ମାରି କହିଲା-ସାର୍
ଏ ଚୋରଟା ବଡ଼ ବଦମାସ୍
ଦି'ମାସ ହେଲା ଚାନ୍ଦା ଦେଇନାହିଁ ।
ହେଲେ ସାର୍ ଆଉ ତା'ଠୁ
ନେବିନି ମୁଁ ଚାନ୍ଦା ଏଇ ମାସଠାରୁ;
ବରଂ ମାସକୁ ମାସ ଦେବି
କାରଣ ସେ ସର୍କାରଙ୍କ ଗୁରୁ !!!



# ଜୋଛ୍ନା ଚେନାଏ

ରୀତା ରଥ

ଜୋଛ୍ନା ଚେନାଏ
ଯଦି ଆକାଶେ
ଜହ୍ନ ଅମାୟିକା ସାଜି

ଜମାଟ ବାଦଲ
କାଳେ ଝରିଯିବ
ତା ପ୍ରିୟାର ଛାତି ଭାଜି

କେତେ ଆଗ୍ରହରେ
ପ୍ରେୟସୀ ସାଜି
ଝରୁଚି ପ୍ରେମ ରାଶି

କହଇ ଆକାଶେ
ଆଉ ବହ ନାହିଁ
ଲୁହର ବିନ୍ଦୁ ବର୍ଷି

ହେ ମୋର ଆକାଶ
ଲକ୍ଷେ ତାରାରେ
ହୁଅ ପଛେ ଝଲମଲ

ସୂର୍ଯ୍ୟଠୁ ଟିକିଏ
ଆଲୁଅ ଆଣିଛି
ଦିଅ ତାରେ ଟିକେ ମୁଲ

ଅନ୍ତରର ଯେତେ
କଳଙ୍କ ସାଇତି
ହୋଇଅଛି ଶତଖଣ୍ଡ

ତଥାପି ତୋ ପାଇଁ
ହସୁଛି ଜୋଛନା
ଦିଅ ନାହିଁ ବାରେ ଦଣ୍ଡ

ତଥାପି ତୋ ପାଇଁ ଜୋଛନା ଆସୁଛି
ଦିଅନାହିଁ ବାରେ ଦଣ୍ଡ






# ନିତ୍ୟ ନିରଞ୍ଜନ

ପ୍ରଦୀପ ପଣ୍ଡା

ଜନ୍ମ ଓ ମୃତ୍ୟୁର ବ୍ୟବଧାନ
ଜୀବନ ବୋଲି କୁହନ୍ତି
କାହା ପାଇଁ ଅନ୍ୟ କେହି
ନା ଜନ୍ମିପାରେ ନା ମରିପାରେ
ଏକଲା ମଣିଷ ମୁଁ
ନିଆରା ମୋ ଅନୁଭୂତି
ସବୁକିଛି ନିଜେ ଅନୁଭବିବାକୁ
ଯାହା କିଛି ଅଭିନବ
କୁଆଁ କୁଆଁ କାନ୍ଦଠାରୁ
'ରାମ ନାମ ସତ୍ୟ ହେ' ପର୍ଯ୍ୟନ୍ତ ।

ମୁଁ ପାଇଛି ନିଜକୁ
ଶିଶୁଟି ର ଦରୋଟି ହସ ରେ
ଟଳ ମଳ ପାଦ ଥାପି
ପ୍ରଥମେ ଚାଲିବାର ଚେଷ୍ଟାରେ
ସ୍ପର୍ଶରେ ଜାଣିବାର
ମୋ ଚାରିପଟେ ଥିବା
ମଣିଷଙ୍କ ଆତ୍ମୀୟତା ।

କେବେ ପୁଣି ଅନ୍ଧାରକୁ ଭୟ
ଲୁଚି ରହିଥିବା
ପିଶାଚ ଓ ରାକ୍ଷସ
ଉଙ୍କିମାରି ଚାଲି ଯାଆନ୍ତି
ମୋ ଚେତନାର ଫର୍ଦ ଓଲଟାଇ
ବାଜେ କଥା ସବୁ
ଆଶଙ୍କା, ଡ଼ର ଆଉ ଭୟ ।

ବୟସର ଉଦ୍ଦାମତା
ପୁଣି କେବେ
ଉଦ୍‌ବେଳିତ କରେ ତନ ମନ
ପ୍ରେମର ସ୍ନିଗ୍ଧ କୋମଳ
ପରଶ ଖୋଜିପାଏ
କାମିନୀର ଆଲିଙ୍ଗନେ
ଆଉ ପୁତ୍ର ଲଭେ

ପ୍ରସାରିତ ଜୀବନର ସଂଜ୍ଞା
ଗଢ଼ି ତୋଳିବାକୁ ଆଉ ଏକ ସିଦ୍ଧାର୍ଥ ।

ଜୀବନର ମଧ୍ୟାହ୍ନରେ ପାଲଟିଛି
ବ୍ୟବସାୟୀ ବଣିକ ମୁଁ

ଲାଭ କ୍ଷତି, ମାପ ତଉଲର ଦୁନିଆ
ଅସରନ୍ତି ଧନ ଜନ
ଯଶ ଖ୍ୟାତି, ସୁବର୍ଣ୍ଣ ଅଳଙ୍କାର
ହୀରା, ନୀଳା, ମଣି, ମୋତି
ସବୁକିଛି ଭରପୁର
ମୋ ଭଣ୍ଡାରରେ...
ତେବେ କଣ ଜୀବନ ର
ଶେଷ ପାହାଚ ଏଇ ସମୃଦ୍ଧି ରେ ?

ଆକାଶକୁ ଚାହିଁ ଦେଖେ
କଳ୍ପ କଳ୍ପ ଧରି
ଝଲକୁ ଥିବ ଗ୍ରହ ତାରା
ନିରେଖି ଚାହିଁଲେ
ଜୀବନୋତ୍ତର ସତ୍ୟର ସନ୍ଧାନ ।
ଜୀବନର ଶେଷ ଦୃଶ୍ୟ
ଶବଧାର କୋକେଇ ରେ
ଶୋଇ ରହିଥାଏ ଶବ ହୋଇ
ବାକ୍ ଶକ୍ତି, ଚଳତ୍ ଶକ୍ତିହୀନ ମୁଁ
ଅପେକ୍ଷା କରେ ଅନଳକୁ...
କ୍ଷିତି, ଆପ, ତେଜ, ମରୁତ, ବ୍ୟୋମ
ଫେରଇ ଦେବାକୁ ହେବ
ଯାହା କିଛି ଆଣିଥିଲି ଧାର କରି ।

ମୁଁ ପୁଣି ଅଶରୀରି
ସେଇମିତି ବସି ରହିଛି
ନିରଞ୍ଜନ କୂଳେ...
ଜାତିସ୍ମର ହେଇ ଦେଖୁଥାଏ
ଅସୁମାରି ମୁହଁ ଜନ୍ମ ଜନ୍ମାନ୍ତର
ଯେତେ ସବୁ ଜ୍ଞାତି ପରିଜନ
ଅପେକ୍ଷାରେ ଜିଇଁ ରହିଥାଏ
ଚେତନାର ଶେଷ ବିନ୍ଦୁ
ବିଲୀନ ହେବା ଯାଏଁ
ଓଁ ପୁର୍ଣ୍ଣମାଦଃ ପୁର୍ଣ୍ଣମିଦମ୍






# ନାକ

ଅକ୍ଷୟ ରାଉତ

ଅଙ୍ଗ ମଧ୍ୟରେ ନାକ
ମୁଖ ମଣ୍ଡଳର ଅସଲି ସୌନ୍ଦର୍ଯ୍ୟ
ଯାହା ପାଇଁ ଏତେ ନାଟ...
କାଳି ଅବା ଗୋରୀ
ମୋଟି ବା ପାତଳୀ
ନାକ ସବୁରି ନିର୍ଣାୟକ... !
କେଟ୍ (କ୍ୟାଟ୍ରିନା କୈଫ୍), ଐଶ୍, ପାମେଲା, ଜୁଲିଆ
ଶାକିରା, ଡାଏନା, ସାନିଆ ଓ ଷ୍ଟେଫିଗ୍ରାଫ୍...
ଚମକୁ ଅଛନ୍ତି ସୁନ୍ଦର ବାଳାଏ
ନାକର କି ମାୟା ଦେଖ... !
ଗୁଣୀ ଜ୍ଞାନୀଙ୍କର ନାକ
କଟିଗଲେ ଥରେ ଭାଗ୍ୟ, ଦୁର୍ଭାଗ୍ୟରେ
ଝୁରଇ ଜୀବନଯାକ... !
ସୁପର୍ଣ୍ଣଖାର ନାକ
ଯେଉଁ ନାକ ଲାଗି ରାମାୟଣ ସୃଷ୍ଟି
ବୁଡ଼ିଲା ରାବଣର ବଂଶଯାକ... !
ରାଜ ନେତାଙ୍କର ନାକ
କଟିଗଲେ ଥରେ ଅବା ବାରମ୍ବାର
ନଥାଏ ଚିନ୍ତା କି ଡ଼ର
ହାତକୁ ହଲାଇ, ନିଶକୁ ଫୁଲେଇ
କହଇ... ବିପକ୍ଷର ଷଡ଼ଯନ୍ତ୍ର... !
ଦେଶ ଓ ଜାତିର ନାକ
ଭଲ କର୍ମ କଲେ ଯଶ ମିଳୁଥାଏ
ନ କଲେ ନ ରହେ ଟେକ ॥







# ମୋତେ ଏମିତି କାହିଁକି ଲାଗୁଛି (ଆତ୍ମାର ବିଳାପ)

ଊର୍ମିଳା ମିଶ୍ର

ମୋତେ ସତେ ଏମିତି କାହିଁକି ଲାଗୁଛି
ଅଣ୍ଟି ଛୁରି ତଣ୍ଟି କାଟେ... ଯାହା
ପଢ଼ିଥିଲି ସେହି ପରି କାହିଁ ଲାଗୁଛି
ଘନ କୁହୁଡ଼ି ଭିତରେ ସତ୍ତା ହୀନ ବାଦଲ
ଦିଗହରା ହେଇ ଇଆଡ଼େ ସିଆଡ଼େ ପହଁରିଲା ପରି ଲାଗୁଛି
ସତେ ମୋତେ ଏମିତି କାହିଁକି ଲାଗୁଛି...

ଏତେ ବଡ଼ ଦୁନିଆରେ ଲୋକ ଚିହ୍ନିବାରେ
ଭୁଲ୍ ହେଲାପରି ଲାଗୁଛି... ଦିଗନ୍ତ ବିସ୍ତାରି
ପାହାଡ଼ ସେପାଟେ ନିରୀହ ଆତ୍ମା ଟେ ବିଳପିଲା ପରି
ବାରମ୍ବାର ମତେ ଶୁଭୁଛି
ମୋତେ ଏମିତି କାହିଁକି ଲାଗୁଛି...

ମିଛ ସମ୍ପର୍କରେ ଦାନ୍ତ ନିକୁଟେଇ
କିଏ ଯେମିତି ପରିହାସ ମୋତେ କରୁଛି... ଆଉ କିଏ
ପୁଣି ତାକୁ ଘୋଡ଼େଇବାକୁ ଯାଇ ଚିରା ଲୁଗାରେ
ତାଳି ପକେଇ ଦେଉଛି
ସତେ ମୋତେ ଏମିତି କାହିଁକି ଲାଗୁଛି...

ନୂଆ ସମ୍ପର୍କର ସାଜସଜ୍ଜା ମତେ ପ୍ରତାରଣାର
ଦୁଃଖ ଦେଉଛି... ମୋ ଆତ୍ମ ସମ୍ମାନକୁ

ବାରମ୍ବାର କିଏ ତୀକ୍ଷ୍ଣ ଛୁରୀକାରେ

ଟିକି ଟିକି କଲା ପରି ଲାଗୁଛି

ସତେ ମୋତେ ଏମିତି କାହିଁକି ଲାଗୁଛି...

କିଏ ଯେମିତି କାଳ ରାତ୍ରୀର ଅନ୍ଧାରରେ ପାହାଡ଼ ଶୀଖରୁ

ଶକ୍ତ ଧକ୍କା ଟିଏ ଦେଉଛି... ଆଉ ପୁଣି କିଏ

ସମ୍ଭାଳିବା ନାମରେ ହା... ହା କରି

ଅତଳ ଗର୍ଭକୁ ଫିଙ୍ଗୁଛି

ସତେ ମୋତେ ଏମିତି କାହିଁକି ଲାଗୁଛି...

ଚାରି ପାଖ ମିଛ ବଳୟ ଭିତରେ

ଚନ୍ଦ୍ର, ପୃଥିବୀ ଓ ସୂର୍ଯ୍ୟ ଗୋଟିଏ ସରଳ

ରେଖାରେ ରହିଲା ପରି ଲାଗୁଛି... ଆଉ ପୁଣି

କେଉଁ ଚକ୍ରବ୍ୟୁହ ରେ ଫସି ଗଲା ପରି ଲାଗୁଛି

ସତେ ମୋତେ ଏମିତି କାହିଁକି ଲାଗୁଛି...







# ଆମେ ପୁଣି ଫେରୁଛୁ

ହେମଲତା ସାହୁ

ଏବେ ମୋ ଗାଁ ମୁଣ୍ଡ, ବ୍ରାହ୍ମଣୀରେ,
ଶୀତର ଆସର ବସିଯିବଣି
ଖୁନ୍ଦା ଖୁନ୍ଦି ହୋଇ ରାଶିଫୁଲ ମାନେ,
ମୁରୁ ମୁରୁ ହେଇ ହସିବେଣି,
ଗାଁ ଶେଷମୁଣ୍ଡ, ଶିବ ମନ୍ଦିର
ଏବେ ଗହଳ ଚହଳ ପଡିଯିବଣି...

ଠିକ୍ ମୋ ପିଲା ଦିନପରି,
ଏବେ କଣ ସେଠି,
ମୋ ଗାଁ ର କୁନି କୁନି ପିଲା ସବୁ
ଅଳି କରୁଥିବେ ଡ଼ଙ୍ଗା ପାଇଁ (?)
ଏବେ କଣ ମୋ ମା ପୁଣି ଖୋଜୁଥିବ, ଆମ ପିଲା ଦିନ
ଡ଼ଙ୍ଗାରେ ସଜାଡୁଥିବ, ଦୀପ
ପାନ, ଗୁଆ, ବରକୋଳି ପତ୍ର...
ଏବେ କଣ ବାପା, ବୋହି ଆଣୁଥିବେ, ବୋଇତ ?
ସତରେ ବାପା ତୁମେ ବୋଇତ ଆଣୁଥିଲ ବୋଲି, ଆମେ ସବୁ
ପରଦେଶୀ ହେଇଗଲୁ...
ଆମେ ସବୁ ପୁଣି ଆସୁଛୁ...
ତୁମ ବୋଇତର, ମଙ୍ଗ ଧରିବାକୁ...
ତୁମ ଅସଜଡ଼ା ମନକୁ ସଜାଡ଼ିବାକୁ...
ରଖିଥାଅ ଆମ କାର୍ତ୍ତିକ ର ବୋଇତ...
ଏଇ ଆମେ ପୁଣି ଫେରୁଛୁ...



# ପ୍ରଶ୍ନ

ଆଦିତ୍ୟ ସାହୁ

ଜୀବନ ରହିଯାଏ ସବୁ ବେଳେ ହୋଇ ପ୍ରଶ୍ନଟିଏ...
ଜନ୍ମଠାରୁ ମୃତ୍ୟୁ ଆଉ ମୃତ୍ୟୁ ପରେ ବି ରହିଥାଏ...
ସକାଳରୁ ସଞ୍ଜ, ସଞ୍ଜରୁ ସକାଳ ଖୋଜା ଚାଲେ ଉତ୍ତର ଟିଏ,
କହି ପାରିବ କି ଜୀବନ ରେ ସବୁଠାରୁ ଖୁଶି କିଏ ?
ଅତୀତରୁ ବର୍ତ୍ତମାନ, ବର୍ତ୍ତମାନରୁ ଅତୀତ ଆସିଯାଏ
ଖୋଜି ଖୋଜି ପାଇ ପାରିଲିନି ସଠିକ୍ ଉତ୍ତର ଟିଏ...
ସମସ୍ତେ କୁହନ୍ତି ମୁଁ ତୁମ ନିଜର,
କିଏ କହେ ମୁଁ ତୁମ ନିଜରଠୁ ଆହୁରି ବି ନିଜର

ଯଦି ସମସ୍ତେ ନିଜର ହୁଅନ୍ତି ତା ହେଲେ ଏଇ ଦୁନିଆରେ ପର କିଏ ?
ପର ଆପଣାର ଭାବନା କୁ ଭୁଲି ଖୋଜିଥିଲି ସାଥୀଟିଏ
ସାଙ୍ଗ ହୋଇ ହସିଲୁ ଖେଳିଲୁ... କାଟିଦେଲୁ ଜୀବନ, ଅତୀତ ଏବେ ସିଏ...
ଭୁଲି ଗଲ, ଭାଙ୍ଗି ଦେଲ ସପନ ସବୁ ପର କରି ଚାଲି ଗଲୁ ମୋତେ
କହି ପାରିବୁ କି ଆମ ପ୍ରେମ ପାଇଁ ଦୋଷୀ କିଏ ?







# ମିଲନ୍ ମିଶ୍ରଙ୍କ ଆଠଟି କ୍ଷୁଦ୍ର କବିତା

-୧-

ଆମ ଗାଁ ଚଇତ
ଅପାଠୋଇ ସତ
ନୁହେଁ କିନ୍ତୁ ଅମାନିଆଁ !
ହେଲେ ଭାରୀ ଦୁଷ୍ଟ
ତୁମ ଗାଁ ଚଇତ
ମନରେ ଲଗାଏ ନିଆଁ !!!

-୨-

ମୁଁ ତୁମ ଗୀତର
ସୂର ହେବି ପଛେ
ହେବିନି ସଁଜ ଦୀପ !
ଦୀପ ଆଲୁଅରେ
ଝଲସିବ କାଳେ
ମରମ ତଳର ପାପ !!

-୩-

ସତେ ମ ସଜନୀ
ତୁମ ଲମ୍ବା ବେଣୀ
ମନେ ମୋ ଜଗାଏ ପ୍ରେମ !
ଜାଣି ମୁଁ ପାରେନି
ଜହ୍ନ ନା ତମେ
ଜହ୍ନରାତିର ଭ୍ରମ !!

-୪-

ମୁରୁଜ ହେବି ନା
ହେବି ସଜନୀ ମୁଁ
ତମ ମାଣବସା ଗୀତ !
ମନେପଡ଼େ ଯଦି
ମଗୁଶୀରରେ ମୋ
ବୋଉର ଲକ୍ଷ୍ମୀ ବ୍ରତ !!

-୫-

ସତରେ ମ ସଖୀ
ଭାରୀ ନିରୀମାଖି
ତମ ଗାଁ କୁଆଁରୀ ଜହ୍ନ !
ଆଶିଣରେ ସିନା
ଅନୁରାଗ ବୁଣେ
ଆଷାଢ଼େ ଭିଜାଏ ମନ !!

-୬-

ଝରା ଶେଫାଳୀ ଗୋ
ଝୁରିବ ଦିନେ ମୋ
ଭଲପାଇବାକୁ ବସି !
ଆଜି ସିନା ତମେ
ବାସ ବାଣ୍ଟୁଛ
କାଲିକି ତ ହେବ ବାସି !!

-୭-

ଦିନ ସବୁ ତୁମ
ଭଲରେ ବିତୁ ମୋ
ଭଲ ପାଇବାକୁ ନେଇ !
ଥିଲେ ଥାଅ ପଛେ
ଶାଶୁଘରେ ତୁମେ
ସୁନାନାକୀ ବୋହୁ ହୋଇ !!

-୮-

ମନ ଯଦି ତୁମ
ଯମୁନା ପୁଲିନ
ଓଠ ମୋ ବଁଶୀବଟ !
ଜୁଆର ଜାଗିଲେ
ତମ ଜମୁନାରେ
ମନ ମୋର ଛଟପଟ !!






# ଲୁହର କବିତା

ନିବେଦିତା ମିଶ୍ରଗୁରୁ

ଭାଗ୍ୟର ଏ କିପରି ଯେ ବିଡ଼ମ୍ବନା ?
ମୁଁ କିମ୍ବା ଜନ୍ମ ନେଲି ହେଇ ବନମଲ୍ଲୀ ଟାଏ...
ଝରିଗଲି ଅକାଳରେ ମିଶିଗଲି ମାଟିର କୋଳରେ...
ଅକୁହା ରହିଗଲା ସବୁ ମନ କଥା ମୋର...
ତନୁ ମୋର ଲୋଟିଲାଣୀ କେବେ
ଦେବତାଙ୍କ ଚରଣ କମଳେ
ବାସ୍ନା ମୋର ହଜି ଗଲା ନିଶୁନ୍ ରାତିରେ...
ରୂପ ମୋର ଲୁଚିଗଲା ଅମାଅନ୍ଧାର ରେ...
ପତ୍ର ଝଡ଼ା ଋତୁପରେ ଅରଣ୍ୟ ଛାତିରେ
ଶୁଷ୍କ ପାଖୁଡ଼ା ମୋର
ରକ୍ତର ସ୍ୟାହି ନେଇ ଲେଖୁଥିଲେ
ଶୋଇ ଶୋଇ ବଣମଲ୍ଲୀ ର ଗାଥା...
ଲେଖୁଥିଲେ ମୋ ପାଇଁ ଲୁହର କବିତା...



# ଇନ୍ଦିରା ମିଶ୍ର

ହଁ ତେବେ ଖାଲି ଲେଖାରେ କି ଅଛି
ବନ୍ଧୁ....
ଯଦି ସ୍ୱାଭିମାନ ନାହିଁ କହିବାକୁ ନିଜକୁ ନିଜ
ଜାତି,
ନିଜ ମାଟିକୁ ଗର୍ବର ସହିତ
ଆମେ ଓଡ଼ିଆ,
ଆମ ଭାଷା ଓଡ଼ିଆ,
କିବା ମିଳିବ ସେଥିରୁ,
ହାସ୍ୟରସ,
ରଙ୍ଗ ଢ଼ଙ୍ଗ,
ଚାଲି ଓ ଚଳଣି,
ସବୁତ ଛାଡ଼ି ଆସିଛେ
କୋଉଠି, କାହିଁ ହଜିଗଲାଣି...
ଗାଁ ମାଟି
ସାହି ଧୂଳି
ଧୂସର
ସୂର୍ଯ୍ୟର ଅସ୍ତରଙ୍ଗ
ପୁନେଇ ଜହ୍ନର ରାତି
ଶୀତଳ କିରଣ
ଅବା ଗ୍ରୀଷ୍ମର ନିଦାଘ ଦାରୁଣ୍ ଉତ୍ତପ୍ତ...
ଖରା
ଏଠି ଖାଲି ବାସ୍ନା ହଜିଯିବାର
କାରଣ ଆମେ ତ ଓଡ଼ିଆ ମାଟିକୁ ଛାଡି
ଦେବା
ହେଲାଣି ଅନେକ ବର୍ଷ
ଅନ୍ୟ ଭାଷା
ଅନ୍ୟ ସ୍ୱାଦ
ଅନ୍ୟ ବେଶ
ରୁଚି ରେ
ନୂତନ ଢ଼ାଞ୍ଚା
ଓଡ଼ିଆ ମାଟିର ମହକ ରେ ନୁହେଁ
ଏକଦମ୍ ଭୁଲ
ଭୁଲିଗଲେ ଗଲା ସବୁ
କିଏ ଯେ ଚିହ୍ନୁଛି
କାହାକୁ କାହର ପରିଚୟ
ଅତି ଘୋଷର
ପରିତ୍ୟକ୍ତ
ଅକ୍ଷର
ବର୍ଣ୍ଣ ଭାଷା
ସାହିତ୍ୟ ସଂସ୍କୃତି ସବୁତ ପାଶୋରା
ଗଲାଣି
ଖାଲି ଇଂରାଜୀ
ହିନ୍ଦୀ
ଏଇ ଦେଖ ମୋ ଲେଖା ମୋର ନୁହେଁ
ଏବେ ଭିନ୍ନ
ଓଡ଼ିଆ ରେ
ଲେଖନି ରୁ କିଛି ଆବୃତ କଲି ବୁଝିକି
ପାରିଲେ ବନ୍ଧୁ
ଅବ୍ୟକ୍ତ
ଜନ୍ତ୍ରଣା ର କଥା
ଅପଭ୍ରଂଶ ର କଥା
ଓଡିଆ, କଥା
ଯଦି ବୁଝିଗଲେ
ଧନ୍ୟବାଦ



# ଜ୍ୟୋତି ପ୍ରସାଦ ପଟ୍ଟନାୟକ

-୧-

କାଳେ ତୁମେ ଥରେ ଆସିଯିବ ବୋଲି
ଦିନରେ ବି ସ୍ୱପ୍ନ ଦେଖୁଥିଲି
ତୁମକୁ ଶୁଣେଇ ଦେବାପାଇଁ କେତେ
କବିତା ମୁଁ ନିତି ଲେଖୁଥିଲି...!!!

ଏବେ ଶୋଇ ଶୋଇ ନିଦୁଆ ହେଲିଣି
ଲୋକେ ଦେଖି କାଳେ ହସୁଛନ୍ତି
ନାଲି ନାଲି ଆଖି ଦେଖି କେହି କେହି
ମଦୁଆ ବୋଲି ବି କହୁଛନ୍ତି ...!!!

-୨-

ତୁମ ଆଖି ଓଠ ପାଗଳ କରିଲା
କବିତା ଅନେକ ଲେଖିଲି
ତୁମକୁ ସେ ସବୁ ଦେବାପାଇଁ ଯାଇ
ତାଙ୍କ ବାହୁରେ ତୁମକୁ ଦେଖିଲି...

ଏବେ ତୁମ କଥା ମନେ ପଡ଼ିଗଲେ
ଭାବୁଛି ମୁଁ କେତେ ମୁଁ ମୂର୍ଖ ଥିଲି
ବାମନ ହୋଇ ବି ଚନ୍ଦ୍ରକୁ ଛୁଇଁବା
ପାଇଁ ହାତ ଟେକି ଠିଆ ହେଲି ...

-୩-

ଧନ, ଗେଲୁ, ପ୍ରିୟେ ଆହୁରି କେତେ ଯେ
ତୁମରି ତୁଣ୍ଡରୁ ଶୁଣୁଥିଲି
ତୁମ କଥା ଶୁଣି ପ୍ରେମେ ମାତିଯାଇ
ପାଠପଢ଼ା ସବୁ ଭୁଲିଗଲି...!!!

ଆଜି ତୁମେ ବଡ଼ ଅଫିସର ବୋଲି
ମୋତେ ତୁମେ ଦୂର କରିଦେଲ,
ଛି ଛି କହି ଅଭଦ୍ର ବୋଲି କି
ମୋତେ କହିଦେଇ ଚାଲିଗଲ ...!!!






# ପିଲାବେଳ ଶୀତ ଦିନ

ସରୋଜ ମିଶ୍ର

ମନଟା ହୁଅଇ ଡ଼ହଳ ବିକଳ
କାହିଁ ଗଲା ସେଇ ପିଲାଦିନ ବେଳ
ସେଇ ଆମ୍ବ ତୋଟା ସେଇ ଜାମୁ ଫଳ
ମାଙ୍କଡ଼ ପରିକା ଯେତେ ପାର ଗିଳ
ନଥିଲା କିଛି ବାଛନ୍ଦ
ଭାବିଲେ ସେ କେବେ ଫେରିବନି ଆଉ ହୋଇଯାଏ କାନ୍ଦ କାନ୍ଦ... ।୧।

ଏବେ ତ ମିଳୁନି ଶୀତର ପ୍ରଭାବ
ସେ ଶୀତ ବେଳ ଟା ? ହାଡ଼ ଭାଙ୍ଗିଦେବ
ସକାଳୁ କୁହୁଡ଼ି ମୁହଁ ଦିଶେ ନାହିଁ
ଏବେ ତ କୁହୁଡ଼ି ମାନେ କିଛି ନାହିଁ
ସୂରୁଜ ଉଇଁବା ଯାଏଁ
ମୁହଁ ସାମନାରେ ଖାଲି ଦିଶୁଥାଏ ଧବଳ ଧୂଆଁ ମେଞ୍ଚାଏ ।୨।

ରାତି ଚାରିଟାରୁ ହେ - ହା ସ୍ୱର
ନିଦ ଭାଙ୍ଗିଯାଏ ହୁଏ ମୁଁ ଅଧିର
ମୁହଁ ନ ଧୋଇ ମୁଁ ଚାଲିଲି ବାରିକୁ
ପୁଙ୍ଗୁଳା ଦେହରେ ବେଙ୍ଗଳା ପାଖକୁ
ହଳିଆ ସାଥିରେ ମିଶି
ପାଳ ମୁଠେ ନେଇ ବଳଦ ପଛରେ ବୁଲିବାରେ ଭାରି ଖୁସି ।୩।

ଯେତେ ବୁଢ଼ା ବୁଢ଼ୀ ଜଣ ଜଣ ହୋଇ
ଦୁଆରେ ବସନ୍ତି ଜାକିଜୁକି ହୋଇ
ଶୀତକୁ ସରବେ ଗାଳି ଦେଇ ଦେଇ
ଏଇ ବରଷ ଶୀତ ସହିହେବ ନାହିଁ

ଧୁନି ଟିକେ କିଏ କର
ମୋର ପରି ଯେତେ ପିଲାଏ ଧାଆନ୍ତି ବାଉଁଶ ବୁଦା ପାଖର ।୪।

ବାଉଁଶ ଗଛର କରଡ଼ ପାଇଁକି
ସର୍ବେ ଏକଜୁଟ ହୋଇଲେ ଯାଇକି
କିଏ ଆଗ ନେଇ ପହଞ୍ଚିବ ଧରି
ଧୁନି ଚାରିପାଖେ ଜାଗା ଯିବ ସରି
କରଡ଼ି ହୋଇଲା ଗଦା
ବାଉଁଶ କରଡି ନିଆଁ ସେକ ମାଡି ସରବେ ହୋଇଲେ ଚଙ୍ଗା ।୫।

ଚାଲ ଯିବା ଟିକେ ପୋଖରୀ ହୁଡ଼ାକୁ
ସବୁ ଥୁରୁ ଥୁରୁ ଦେଖୁଥ ଯାହାକୁ
ଢେଙ୍କା ନାଳ ଠାରୁ ଢ଼ିଙ୍କିଶାଳ ଯାଏଁ
ସବୁ ଘର ଗୋହୀ ସେଇଠାରେ ଥାଏ
ଜଣେ ଡ଼େଇଁଲା ପାଣିରେ
ମେଣ୍ଢାପଲ ପରି କାକ ସ୍ନାନ ସାରି ଶୁଖିଲେ ସୂର୍ଯ୍ୟତାପରେ ।୬।

ଜାକିଜୁକି ହୋଇ ପହଞ୍ଚିଲି ଘରେ
ଧାନ ଉଆଁସୁଛି ବୋଉ ଅଗଣାରେ
ଓଳୁଅ ସିଝୁଛି ତାହାରି ଭିତରେ
ବୋଉ ଅନେଇଲା ବୁଲିକରି ଧିରେ
ଖରାକୁ ପିଠି ଦେଖେଇ
ବୋଉ ବାଢ଼ିଦେଲା ପଖାଳ ବେଲାଟେ ଚୁଲିଗଡ଼ା ଆଳୁ ଦେଇ ।୭।

ଲିଭିବନି କେବେ ସେ ଅତୀତ ସ୍ମୃତି
ନିତି ଜାଳୁଅଛି ମୋ ଘଟନା ବତୀ
ମନ ଖୋଜୁଥିବ ସେ ମିଠା ପରସ
ଯେତେଦିନ ପିଣ୍ଡେ ଥିବ ଏ ନିଶ୍ୱାସ
ଋତୁ ବଦଳିଲା ବେଳେ
ଗୋଟି ଗୋଟି ହୋଇ ସବୁ ଦିଶିଯିବ ଭିଜିଲା ଆଖିର ଜଳେ ।୮।






# ଆଜି କାହିଁ ଭାରି ମନେ ପଡୁଛି

ଆଶିଷ କୁମାର ପଣ୍ଡା

ଆଜି କାହିଁ ଭାରି ମନେପଡୁଛି,
ଘର ହାଣ୍ଡିଶାଳ
ବୋଉ ହାତରନ୍ଧା ମୁଗଡ଼ାଲି
ଶାଗ ଖରଡ଼ା, ଆଳୁ ଭରତା
ପାଳୁଅ ଭଜା ଆଉ ଗାଁ ପୋଖରୀରୁ ଧରା ଚିଙ୍ଗୁଡ଼ିର ଝୋଳ
ଏ ସବୁ ମୋର ଶିରାପ୍ରଶିରାରେ ବହୁଛି ରକତ ହୋଇ
ପାଉଁଶ ତଳର ନିଆଁ ପରି,
ସବୁ ସ୍ମୃତି ଉଙ୍କି ମାରୁଚି ମୋ ଚଗଲା ମନରେ...

ମନେ ପଡୁଛି...
ଗାଁର ସେ ମାଦକ ଭରା ଜହ୍ନ ରାତ୍ରୀ...
ଅମାବାସ୍ୟାରେ ତାରା ମାନଙ୍କର ଠିଆ ପୁଚି
ଆଜି ଖୋଜୁଚି ଏ ସବୁ
ଏଇ ସହର ରୁ
ଛାତ ଉପରେ ଠିଆ ହୋଇ
ମହାକାଶର ଅତଳ ସାଗରକୁ ଚାହିଁ...

ପୁଣି ମନେ ପଡୁଚି
ଘର ଚାଳରେ ଘର ଚଟିଆ ମାନଙ୍କ ବସା
ବର୍ଷାରେ ବିଲକୁ ଝାମ୍ପି ନେଇ ଯାଉଥିବା
ମୋ ସ୍ନେହର ଲୋକ ମାନଙ୍କ ଚିକମିକ୍ ମୁହଁ
ଷଷ୍ଠୀ ଓଷା, ଜହ୍ନି ଓଷା, ଗୁରୁବାର ଓଷା

ବୁଧେଇ ଓଷା, ଖୁଦୁରୁକୁଣୀ ଓଷା ମାନଙ୍କରେ
ଗାଁ ର ସୁନାବେଶ
ନାଳରେ ବଇଁଶୀ ପକାଇ ମାଛ ଧରୁଥିବା
ଓ କାଗଜ ଡ଼ଙ୍ଗା ଭସାଉଥିବା
ମୋର ସ୍ଥିର ଚିତ୍ର

ମନେ ପଡ଼ିଲା ବେଳେ
ଆଖିରୁ ଝରିଆସୁଚି ଦି ଟୋପା ଲୁହ
ହୃଦୟରେ ବୁଣି ହୋଇଯାଉଚି ଟିକିଏ କୋହ
ଗାଁ ବୋଲି ଗୋଟିଏ ଶବ୍ଦକୁ
ମୁଁ ମୁର୍ଖ
କଣ ମୁଁ ବ୍ୟାଖ୍ୟା କରି ପାରିବି...
ଆଉ କଣ ସଂଜ୍ଞା ଦେଇ ପାରିବି ଆମ ଗାଁ ର
ଯେତେ ବର୍ଣ୍ଣନା କଲେ ବି
ପୃଷ୍ଠା ପୃଷ୍ଠା ସରିଲେ ବି
ସାରା ପୃଥିବୀ ନିଅଣ୍ଟ ହେବ ଆମ ଗାଁକୁ,
ବର୍ଣ୍ଣନା କରିବାକୁ...!!!






# ଇଚ୍ଛାମୟୀ

ନକ୍ଷତ୍ରକବି ସରୋଜ ସାହୁ

ତୋ
ପାଦର
ଅନୁପସ୍ଥିତ ନୁପୂରକୁ
ଖୋଜୁଛି ମୁଁ

ଗଙ୍ଗୋତ୍ରୀର
ହେମାଳ ଗଣ୍ଡରେ,
ଗଙ୍ଗାର
ଦୂଷିତ ପାଣିରେ,
ଚମରୀ ଗାଈର
ବହଳ ଲୋମରେ,
ଅଶ୍ୱଗନ୍ଧାର
ଗହଳ ଦ୍ରୁମରେ,
ଯେତିର
ଅନ୍ଧାରୁଆ ଗୁଂଫାରେ,
ଦିଅଁଙ୍କର
ଦେହଲଗା ଚମ୍ପାରେ,
ଜହ୍ନର
ଅତି ପ୍ରିୟ ଆଲୁଅରେ,
ସୂର୍ଯ୍ୟର
ବେଖାତିର ଅନ୍ଧାରରେ,
ଶ୍ରାବଣର
ନିଆଁଲଗା ଲୁହରେ,
ବସନ୍ତର
ଜମାଟ ବନ୍ଧା କୋହରେ,
ସାଗରର
ଲେଉଟାଣି ଢେଉରେ,
ସ୍ୱପ୍ନର
ଅଧାରାତିଆ ଦାଉରେ,
ମହୁମାଛିର
ରସଭର୍ତ୍ତି ମହୁଫେଣାରେ,
ସାଇବେରିଆ ଫେରନ୍ତା
କ୍ରେନରେ ଡ଼େଣାରେ,
ରାଧିକା ଆଖିରୁ
ବୋହିଥିବା
ଅକାତ କାତ ପାଣିରେ,
କହ୍ନେଇର
ବଇଁଶୀକୁ ଝୁରୁଥିବା
ପବନରେ,

ତୋ ପାଦର
ଅନୁପସ୍ଥିତ
ନୁପୂରକୁ
ଖୋଜୁନି ମୁଁ
ମଶାଏ ଧାତୁର
ଲୋଭରେ
କି କାମନାର ଆବେଗରେ
ମୁଁ ଜାଣେ
ତୋ, ନୁପୂର
ଝୁରୁଥିବ
ମୋ
କାଣି ଆଙ୍ଗୁଠିକୁ
କୋଉ
ଅନ୍ଧାରୁଆ
ମାଂସର ହାଟରେ...






# ଭଲ ପାଉଛି ଟିକେ ଟିକେ...

ବିଷ୍ଣୁ ପ୍ରସାଦ ଚୌଧୁରୀ

ତୁମକୁ ଦେଖିଲା ଦିନୁ ଭଲ ପାଉଛି ମୁଁ ଟିକେ ଟିକେ
ତୁମକୁ ପାଇବା ପାଇଁ ମନ କହୁଛି ଟିକେ ଟିକେ
ଅବୁଝା ବୁଝେନି ମନ
ହେଲେ ପାଏ ନାହିଁ ତୁମ ଚିହ୍ନ
ଖୋଜୁଛି ଟିକେ ଟିକେ

ତୁମ ମୁହଁକୁ ମୁଁ ନିତି ଦେଖେ ଜହ୍ନରେ ଟିକେ ଟିକେ
ତୁମ ପାଉଁଜି ଶବଦ ଶୁଭେ ମୋ ସପନେ ଟିକେ ଟିକେ
ମୋ ସପନ ସତ ହୋଇବ
ମୋ ବଧୁ ସାଜି ତମେ ଫେରିବ
ମନ ମୋ କହୁଛି ଟିକେ ଟିକେ....

ତୁମେ ରୁଷିଲେ ଚାନ୍ଦିନି ରାତି ଲାଜେଇଯାଏ ଟିକେ ଟିକେ
ତୁମ ହସରେ ଜହ୍ନର ମୁହଁ ଦିଶୁଛି ଟିକେ ଟିକେ
ସେହି ଚାନ୍ଦନୀ ଚାହିଁ ରହିଛି
ମୋ ପ୍ରିୟାକୁ ଖୋଜି ବୁଲୁଛି
ହେଲେ ପାଉନି ଟିକେ ଟିକେ....

ତୁମେ ଚାଲିଲେ ପାଦରୁ ଝରେ ମୁକୁତା ଟିକେ ଟିକେ
ତୁମ ଚାହାଣିରେ ସତେ ଦିଶେ ଇନ୍ଦ୍ରଧନୁ ଯେ ଟିକେ ଟିକେ
ଚାଲିତ ଗଜ ଗାମିନୀ ପୁଣି ଇନ୍ଦ୍ରଧନୁର ଚାହାଣୀ
ତମେ ମୋ ଠାରୁ ଦେଇ ଯାଅନି
ପ୍ରିୟା ଫେରିଆସ ଟିକେ ଟିକେ....



# ମୌସୁମୀର ଆଗମନକୁ

ମୀନ କେତନ ପଟ୍ଟନାୟକ

ସେ ଜୟପୁରିଆ ବଗୁଲିଆ ଟୋକାଟା
ସାନ ସାର୍‌ଙ୍କ ଚାଲିବାର ନକଲ କରୁଥିବା ବେଳେ
ନଣ୍ଡା ମୁଣ୍ଡିଆ ଡ୍ରାଇଭର ବଇଁଶୀ ଫୁଙ୍କା କାଳୁ
ଫେଁ କିନା ହସିଦିଏ ।

ଶିଡ଼ି ତଳ ହିଡ଼ ଉପରେ ବସି କେହି ଜଣେ
ଉଦୁଉଦିଆ ଖରାବେଳ ଟାରେ

ରଫ୍‌ଖାତା କାଗଜକୁ ଭାଙ୍ଗି ଡ଼ଙ୍ଗା କରୁଥାଏ ।

ଓ

ଅପେକ୍ଷାରେ ଥାଏ ମୌସୁମୀର ସୁଲୁସୁଲିଆ ଆଗମନକୁ ।

---

# ରେନ୍ କୋଟ୍

ମୀନକେତନ ପଟ୍ଟନାୟକ

ଝଡ଼ ବର୍ଷାରେ ଭିଜି ଭିଜି ଆସି ମୁଁ
ରେନ୍‌କୋଟ୍ ଓହ୍ଲାଉ ଓହ୍ଲାଉ
ବଡ଼ ଆଶା ନେଇ ଅଭିଶିକ୍ତା ଆସି କହେ

"ତୋ ପିଠିରେ ମତେ ନାଉ କରି ଆଜି ବୁଲେଇବୁ ?

ବାବୁନା ଦିଦି ମୋତେ ଖାଲି ହଇରାଣ କରୁଛି ।"



# ପ୍ରତ୍ୟାଶା

ରାମ ଚନ୍ଦ୍ର ସାହୁ

ତମେ ଯଦି ପଚାରିବ

ଆକାଶକୁ, ତୋର ସ୍ୱପ୍ନ କଣ ?

ଆକାଶ କହିବ,

ମୁଁ ତ ସ୍ୱପ୍ନର ଗୋଟେ ଗନ୍ତାଘର

ଦିନରେ ତମଠୁ

ସମ୍ମୋହନର ମନ୍ତ୍ର ମାଗେ

ରତିହେଲେ ଇଚ୍ଛା ବଢ଼ିଯାଏ

ପୃଥିବୀକୁ କଳା ଚାଦରରେ ଢ଼ାଙ୍କି

ଦେବାକୁ !

ନପାଇବାର ଅଶା ନେଇ ମୋଠୁ

ଦୁରେଇ ଯାଉଚ !!

ତମେ ଯଦି ପଚାରିବ

ସମୁଦ୍ରକୁ, ତୋର ଚିନ୍ତା କଣ ?

ସମୁଦ୍ର କହିବ,

ମୁଁ ତ ଚିନ୍ତାର ଗଭୀରତମ

ଆଶ୍ଚର୍ଯ୍ୟଟେ, ଦେବା ପାଇଁ

ହାତ ବଢ଼େଇଛି ଯେ ତମେ

ତମେ ଯଦି ପଚାରିବ ମତେ

ଜୀବନ କଣ ?

ମୁଁ କହିବି ଜୀବନ ମାନେ

ଛୋଟ ପିଲାମାନଙ୍କର

ଗୋଟେ ବହୁଚୋରୀ ଆଉ

ଲୁଚକାଳି ଖେଳ !!!







# ପ୍ରଭୁ ଏହି ଅଳି ତୋହ ଠାରେ...

ରଶ୍ମୀ ରଞ୍ଜନ ଦାଶ. (ବାପୁ)

ବଡ ଦେଉଳରୁ ପୁଣି ଖସିଲା ପଥର
ସୂଚନା ଦିଏ କି ସତେ କେଉଁ ବିପଦର
ହେ କଳାଠାକୁର .........ମନ ଲାଗେ ଅଧିର
ରକ୍ଷା କର ହେ ପ୍ରଭୁ ରକ୍ଷା କର......(୧)

ଦୁର୍ନୀତି ଅନୀତି ଆଜି ସୀମା ଟପିଯାଏ
ରକ୍ଷକ ପୁଣି ଯେ ଆଜି ଭକ୍ଷକ ବୋଲାଏ
ନାରୀର ସମ୍ମାନ ନାହିଁ ,ନାହିଁ ଗୁରୁଜନେ ଭକ୍ତି
ଜାଣୁଛି ଲାଗୁଛି କଷ୍ଟ ତୋତେ ରମାପତି ..(୨)

ମାଆ ଆଜି ଛୁଆ ବିକେ ଅନ୍ନ ଗଣ୍ଡେ ପାଇଁ
ପୁଅ ମାଡ଼େ ବାପ ମରେ ଥରିଲାଣି ମହୀ
ବଡ ହୋଇଗଲେ ପୁଅ ବଡ଼ ହୁଏ ତା' ଆଚାର
ବାପା ମ' ଙ୍କୁ ପଠାଏ ସେ ବୃଦ୍ଧାଶ୍ରମ ଠାର

ଜାଣୁଛି ଲାଗୁଛି କଷ୍ଟ ତୋତେ ମହାବାହୁ
ହେଉଛି ଏସବୁ ଯେଣୁ ତୁ ଥାଉଁ ଥାଉଁ..(୩)
ରାଜା ଆଜି ନିଜ ରାଜ୍ୟ ଶତ୍ରୁ ପାଲଟିଛି
ନିଜ ଦେଶ ଇଜ୍ଜତକୁ ବିଦେଶେ ବିକୁଛି
ଅରାଜକତା ଯେ ବଢ଼େ, ବଢ଼େ ନାରୀର କଷଣ
ପ୍ରତିଦିନ ସତ୍ୟ ସାଥେ ହୁଅଇ ଧର୍ଷଣ
ପାପ ଟଙ୍କା ବଳେ ଘର ଆଲୋକେ ସଜ୍ଜିତ
ଗରିବ ଗୁରୁବା ଙ୍କୁ ଯେ ମିଳୁ ନାହିଁ ଭାତ
ତୋହ ରାଜ୍ୟେ ଏତେ କଥା ନିତି ତୁ ଦେଖୁଛୁ
ଆତ୍ମଗ୍ଲାନୀରେ ତୁ ପ୍ରଭୁ ଜାଣେ ଜଳୁଅଛୁ..(୪)

ଧର୍ମ ନାମେ କେତେ ଖୋଇ ଆଜି ଏଠି ହୁଏ
ମନ୍ଦିର ମସ୍‌ଜିଦ୍ କହି ଯୁଦ୍ଧ ଚାଲିଥାଏ
ଅଶିକ୍ଷା ଦାରିଦ୍ର୍ୟ କୁ ଯେ ନାହିଁ କାର ନିଘା
ଦେଶ ମୋର ପାଲଟିଛି ଚୋରଙ୍କର ଜାଗା
ରାଜା ଏଠି ଭଲ ନୁହଁ, ଭଲ ନୁହଁ ପ୍ରଜା
ଦେଖି ଏଇ ଦୁର୍ଗତୀ ତୁ ଅଧିର କାଳିଆ ରଜା....(୫)
ଅଭିମାନେ ରୁଷି ଅଛୁ ତୁ ହେ କାଳିଆ ରଜା
ନିଜ ଦେଉଳକୁ ଭାଙ୍ଗି ପାଉ ନିଜେ ସଜା
ତଥାପି କହୁଛି ତୋତେ ନହୁଅ ନିଠୁର
ବଡଦେଉଳ ରୁ ଆଉ ନଖସୁ ପଥର...(୬)

ତୁ ଚାହିଁଲେ ମୋ ଭାରତ ପୁଣି ହସିବ
ଧର୍ମଧ୍ୱଜା ନ୍ୟାୟବାନା ପୁଣି ଉଡିବ
କୋଟି କୋଟି ଭକ୍ତ ତୋର ତୋ ମନ୍ଦିରେ ଚାହିଁ
ତୋ ମନ୍ଦିର ବିନା ତାଙ୍କ ସାହା କେହି ନାହିଁ.....(୭)
ତେଣୁ କରୁଛି ବିନତୀ ମୁଁ ଅଧମ ପାମର
ନ ଭାଙ୍ଗୁ ତୋହ ଦେଉଳ ନ ଖସୁ ପଥର
ବକ୍ର ନେତ୍ରେ ଚକ୍ରଧାରୀ ଥରେ ଦେଲେ ଚାହିଁ
ଅନ୍ୟାୟ ଅନୀତି କାହିଁ ଯିବ ଯେ ପଳାଇ
ନଟବର ନାଟୁଆହେ ନ ନିଅ ପରୀକ୍ଷା
ତୁହି ଜଗତ ର ନାଥ ଏକ ମାତ୍ର ଦୀକ୍ଷା...(୮)

....................ଜୟ ଜଗନ୍ନାଥ.....................






# ମୋ ମନର କବିତା

ମୁଁ ସୁରେଶ

ଏ ମନ ଖୋଜୁଛି ଜଣକୁ.......

ଯିଏ ଲାଗିବ ନିଜର ନିଜର....

ମୋ ସପନ ରାଇଜେ କରିଛି ସେ ଘର

ଘର ନୁହେଁ ସେ ମୋ ମନର ମନ୍ଦିର....

ସେ ମନ୍ଦିରେ ତୁମକୁ ମୁଁ ରଖିଛି ସାଇତି....

କେବେ ଛାଡି ଯିବ ନାହିଁ ତୁମେ ମୋତେ ସାଥୀ....

ତୁମେ ଛାଡି ଚାଲିଗଲେ ରହିଯିବି ଏକା....

ସାଥୀ ବିନା ଜୀବନର ସ୍ୱାଦ ପଡିଯିବ ଫିକା...

ଫିକା ଯଦି ପଡିଯିବ ଜୀବନର ସ୍ୱାଦ..

ସବୁଦିନ ପାଇଁ ଆଖିରୁ ମୋ ହଜି ଯିବ ନିଦ...

ନିଦ ଯଦି ହଜି ଯିବ, ହୃଦୟ କାନ୍ଦିବ....

ଆଖିରୁ ମୋ ଝରିବ ଶ୍ରାବଣର ଧାରା...

ଜୀବନର ସବୁ ସୁଖ, ସବୁ ସ୍ୱପ୍ନ, ସବୁ ଆଶା,
ସବୁ କିଛି ସେ ଶ୍ରାବଣେ ଧୋଇ ଯିବ "ମୀରା" (କବିତାର ନାୟିକା)

ଭୂଲିବନୀ....ଭୂଲିବନୀ.....ଭୂଲିବନୀ......ଭୂଲିବନୀ.....ଭୂଲିବନୀ

..................କେବେ ତୁମେ ଭୂଲିବନୀ "ମୀରା"..............................



# ତୁମେ ତ ମୋହର

କମଳ କୁମାର ଦାଶ

ତୁମେ ତ ମୋହର ପ୍ରାଣ ବିଥିକାର
କୋମଳ କୁସୁମ କଳି
ତୁମେ ହିଁ ମୋ ମନ ଇନ୍ଦ୍ରଧନୁର
ସାତ ରଙ୍ଗର ବର୍ଣ୍ଣାଳୀ ... ୧

ତୁମେ ପରା ମୋର ପାରିଜାତ ପୁଷ୍ପ
ମୋର ମନ ବାଟିକାର
ତୁମେତ ମୋହର କବିତାର ଘର
ମୋର ଭାଷାର ସଂଭାର ... ୨

ମୋର ପୁଷ୍କରିଣୀ କମଳ ଜଳିରେ
କିସଳୟ ତୁମେ ପରା
ସକାଳ ସୂରୁଜ ପକ୍ଷୀର କାକଳି
ଶୀତ ସକାଳର ଖରା ... ୩

ସାଥୀ ତୁମେ ମୋର ପୁରା ଫଗୁଣର
ରଙ୍ଗ ମୋର ଅବିର ର
ମୋର ବସନ୍ତର ପୁଷ୍ପର ସମ୍ଭାର
କୁହୁ ତାନ କୋଇଲିର ... ୪

ଚାନ୍ଦ ତୁମେ ମୋର ମନ ଆକାଶର
ଅଳସି ଲାଜେଇ ପ୍ରିୟା
ତୁମରି ହସରେ ତୁମରି କାନ୍ଦରେ
ଭାଙ୍ଗେ ଗଢ଼େ ମୋ ଦୁନିଆଁ ... ୫

# ଓଡ୍ରଜାର ଖେଦ

ଡ଼. ଦେବେନ୍ଦ୍ର କୁମାର ପାଣିଗ୍ରାହୀ

ମହାଭାରତରୁ ଉଡ୍ରଦେଶରୁ ଓଡ଼ିଶା ଜାତ

ମହାମେଘବାହାନ ଐରରାଜ ଖାରବେଳ

ପ୍ରାଚୀନ ଓଡ଼ିଶାର ପ୍ରସିଦ୍ଧ ସମ୍ରାଟ

ଜିଣିଥିଲେ ଭାରତ ବର୍ଷର ବହୁ ଅଞ୍ଚଳ ।୧।

ଖାରବେଳଙ୍କର କୀର୍ତ୍ତି

ଖଣ୍ଡଗିରି ଉଦୟଗିରି ଗୁମ୍ଫାସବୁ ସାଖୀ

ଗଙ୍ଗବଂଶର ସମ୍ରାଟ ଅନଙ୍ଗଭୀମ ଦେବଙ୍କ କୀର୍ତ୍ତି

ଜଗନ୍ନାଥ ମନ୍ଦିର ପୁରୀ ତୀର୍ଥ ଧାମ ଭିତ୍ତି ।୨।

ପାଇକ ପୁଅ ସେନାବାହିନୀ ଗଢ଼ି

ମୁଷାମଲ୍ଲିକ କାମାକ୍ଷାନଗର ଥାନା ଉଡ଼ାଇ

ଲକ୍ଷ୍ମଣ ନାୟକ ଗଡ଼ଜାତ ଆନ୍ଦୋଳନ ଚଳାଇ

ତୁଟିଲା ବିଦେଶୀ ବଳ ଉତ୍କଳ ହେଲା ଉଜ୍ଜ୍ୱଳ ।୩।

ଉତ୍କଳ ଭାସ୍କର ସାମନ୍ତ ଚନ୍ଦ୍ରଶେଖର

ଇଂରେଜ ମାନଙ୍କର ଥିଲେ ସମ୍ମାନାସ୍ପଦ

ହେଲା ତାଙ୍କ ସିଦ୍ଧାନ୍ତ ଦର୍ପଣ ଜ୍ୟୋତିଷ୍କ ଦର୍ପଣ

ସେ ହେଲେ ଦ୍ୱିତୀୟ ଭାସ୍କରାଚାର୍ଯ୍ୟ ।୪।

ବକ୍ସିଜଗବନ୍ଧୁ ବାଜୀ ରାଉତ

କରୁଥିଲେ ପାଇକ ଯୁଦ୍ଧ

ସତ୍ୟବାଦୀରେ ପଞ୍ଚସଖା

ଶିକ୍ଷା ଦୀକ୍ଷା ଓ ସଂସ୍କାର ଶିଖା ।୫।

ପଞ୍ଚୋଦଶ ସାରଳା ଦାସ ମହାଭାରତ

ସନାତନ ଧର୍ମ ଶ୍ରୀ ଚୈତନ୍ୟ

ବଳରାମ ଦାଣ୍ଡିରାମାୟଣ ଅଚ୍ୟୁତାନନ୍ଦ ହରିବଂଶ

ଯଶୋବନ୍ତ ଗୋବିନ୍ଦ ଚନ୍ଦ୍ର ଅନନ୍ତ ଦାସ ହେତୁଦୟ ଭାଗବତ ।୬।

କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ, 'ଲାବଣ୍ୟବତୀ'

ଦିନକୃଷ୍ଣ 'ରସକଲ୍ଲୋଳ' କବି ସୂର୍ଯ୍ୟ ବଳଦେବ ରଥ 'ଚମ୍ପୁ'

ଅଭିମନ୍ୟୁ ସାମନ୍ତ ସିଂହାର 'କଳାମାଣିକରେ' କାହ୍ନୁ

ଏ ସବୁ ରୀତିଯୁଗେ ଛନ୍ଦ ଅଳଙ୍କାରେ ମଧୁମୟ ସୃଷ୍ଟି ।୭।

ଆଧୁନିକ ଯୁଗେ କବିବର ରାଧାନାଥ ରାୟ 'ଉଷା', 'ଦରବାର'

ବ୍ୟାସକବି ଫକିର ମୋହନ ସେନାପତି 'ମାମୁଁ', 'ଲଛମା' ରୁ ଛଅ ମାଣ ଆଠ ଗୁଣ୍ଠ'

ପରେ ଖୋଜିଥିଲେ 'ମୁଁ ହାଟ ବାହୁଡ଼ା'ର ବାଟ

'ଉତ୍କଳ ସନ୍ତାନ' ଉଠରେ ଉଠରେ ଡ଼ାକେ ମଧୁ ବାରିଷ୍ଟର ।୮।

ଏବେ ସବୁ ଭୁଲିଗଲେଣି

ଯୁଗଜନ୍ମା ସୁଭାଷ, ଯୁଗ ସ୍ରଷ୍ଟା ଗୋପବନ୍ଧୁ

ଆଉ ଯୁଗ ପୁରୁଷ ଉତ୍କଳ ଗୌରବ ମଧୁବାବୁ

ଶିକ୍ଷା ଦୀକ୍ଷା ସଂସ୍କୃତିର ପ୍ରତୀକ ଏଇ ଉତ୍କଳ ଐତିହ୍ୟ ।୯।



# ତମ ସ୍ମୃତିରେ

ନିହାର ରଞ୍ଜନ

କେବେ ତୁମେ ଆସିଥିଲ
ହୃଦୟର ଝରଣାରେ
କୁଳୁକୁଳୁ ନାଦ କରି,
ବସନ୍ତର ଅନ୍ତରାଳେ
କୋଇଲିର ମଧୁସ୍ୱରେ
କୁହୁ କୁହୁ ତାନଭରି ।

କେବେ ତୁମେ ଆଙ୍କିଥିଲ
ହୃଦୟ ବିଦୀର୍ଣ୍ଣ କରି
ସରଗର ପ୍ରତିଶୃତି,
ଆଜି ପୁଣି ଚାଲିଗଲ
ସବୁକିଛି ଭୁଲିଗଲ
ସତେ କ'ଣ ମନେ ନାହିଁ
ଅତୀତର କିଛି ସ୍ମୃତି ?

ଜାଣେନା,
କେବେ ତମେ ଆସିବ ମୋ
ଅସଜଡ଼ା ଘରକୁ,
ମୁଁ ଥିବି କି ନଥିବି
ତଥାପି,
ହୃଦୟ ମୋ ଖୋଲାଥିବ
ଯେ ପର୍ଯ୍ୟନ୍ତ ବଞ୍ଚିଥିବି
ଚାହିଁ ତମ
ଫେରିବା ବାଟକୁ ।

ଏତିକି କାମନା
ତମ ସ୍ମୃତିରେ
ଫୁଲ ପଡୁ ତୁମ ଚଲାପଥରେ
ତମ ପାଇଁ ପଡୁ ଖଇ,
ପ୍ରତିଟି ସକାଳ
ଗୁଞ୍ଜରିତ ହେଇ
ତମରି ସ୍ମୃତିକୁ ନେଇ ।







# ଶ୍ରାବଣୀ ପଟ୍ଟନାୟକ

ଲିଭା ଦୀପାଳୀର ଶେଷ ଶୀଖା ମୁଁ ଗୋ ଲିଭି ଲିଭି ଆସେ ସଳିତା ମୋର… !
ଝରା ବସନ୍ତର ମଉଳା ଫୁଲ ମୁଁ

ନୁହଇଁ ତୁମ ଗଜରା

ହାର … !!!

… ପ୍ରେମ, ଉତ୍ସର୍ଗ, ଆନନ୍ଦର ମହ ମହ ବାସ୍ନାରେ ଭିଜା ଫଗୁଣ ତୁମେ ମୋର,
ତୁମକୁ ଭୁଲି ଯାଇନି,

ହେଲେ ମନେ ପକେଇବାକୁ ଡ଼ରୁଥାଏ,

ପ୍ରେମର ଉତ୍ତଳତାରେ ଅପ୍ରାପ୍ତିର ବାସ୍ନା କେମିତି

ଘୁମେଇ ଗୁମୁରି ମାରେ ମନକୁ ମୋର ।

ଭାରୀ କଷ୍ଟଲାଗେ ଅତୀତକୁ

ଅତୀରେ ନ ରଖି ବର୍ତ୍ତମାନରେ ମିଶେଇ ଦେବାକୁ ।

କିନ୍ତୁ, କୁହନା ତୁମେ ତ୍ୟାଗର
ଉତ୍ତଳ ପ୍ରାଚୀର ସେପଟେ ଅବିଶ୍ୱାସର

ଛବିଟି କାହାର ???

ହା ହା ହା ହା !

ଡ଼ଙ୍ଗୀ ଭସେଇ, ଦୀପ ଜାଳି, ଦିଅଁ ଦରଶନ ପରେ
ଖବର କାଗଜ ଓଲଟାଉ ଥିବେ ବୋଧେ ଆପଣ
ବସି ଥାଆନ୍ତୁ,
ଘର କାମ ସାରି ଆସିବି ମୁଁ….

କାର୍ତ୍ତିକର ପୁନେଇଁ ଜହ୍ନଟା ସାଙ୍ଗ ହୋଇ ଦେଖିବା ଆଜି.
ହଁ ଭଜା ବାଦାମ୍ କିଛି ଆଣିଥିବ, ଉଁ ହା ହା ହା ହା






# ପ୍ରତାରିକା ପ୍ରେୟସୀ

ବିକି ମିଶ୍ର

ଶୁଣ ଥରେ, ବୁଝିବାକୁ ଚେଷ୍ଟା କର ଥରେ ମୋ ହୃଦୟର ପ୍ରେୟସୀ
କହିଯାଅ ନା ଚାଲିଗଲ କାହିଁ କେଉଁ ଅପରାଧେ ମୋତେ କରିଣ ଦୋଷୀ
ହୃଦୟ କରି ଉତ୍ତପ୍ତ ପିଣ୍ଡ ତୁମ କଥା ମୁଁ ଭାବୁଛି ଏଠାରେ ବସି ... !!

ଆଜି ବି ମୋ ଚକ୍ଷୁ ପଲକରେ ନୃତ୍ୟାଭିନୟ କରନ୍ତି
ତୁମକୁ ନେଇ ଦେଖିଥିବା ସ୍ୱପ୍ନରାଶି
ଏବେ ବି କେବେ କେବେ ଛାୟା-ତନ୍ଦ୍ରାମୁଦ୍ରିତ ଚକ୍ଷୁଦ୍ୱାର
ମୋର ଅନୁଭବ କରନ୍ତି
ଚାଲି ଯାଉଛ ତୁମେ ହସି ହସି... !!

ମୋର ହୃଦୟ-ଦେହ-ମନ କିଛି ବି
ନଥିଲା ତ ତୁମକୁ ଅଦେୟ
ମୋର ରିକ୍ତ ଶିକ୍ତ ହୃଦୟ ତନ୍ତ୍ରୀ ର ପ୍ରତି ଅଣୁକୁ ମୁଁ
ତୁମ ପାଇଁ କରିଥିଲି ତ ବ୍ୟୟ ... !!

ଦିନଥିଲା ତୁମେ ଥିଲ ଆଉ କାହା ମନର ମାନସୀ,
ଯେଉଁଦିନ ତା ଠାରୁ ଚାଲିଆସି ହେଲ ମୋର
ହେଇଗଲ ମୋର ତୁମେ ପ୍ରେୟସୀ ... !!

ତୁମର ପଦେ ପଦେ କଥା ମୋତେ ଲାଗୁଥିଲା ସତେ କି ମନ୍ତ୍ର,
ବାସ୍ତବରେ ତୁମେ କେମିତି କରିପାରିଲ ଏ ବିରତ ଷଡ଼ଯନ୍ତ୍ର ??

ମୋ ସହ ତୁମର ପରିଣୟ ର ଅବର୍ତ୍ତମାନରେ
ତୁମେ କେମିତି ଫେରିପାରିଲ ଅତୀତ କୁ,
ଏତେ ସବୁ ଜୀବନ-ଇତିହାସର ଅଧ୍ୟାୟଗୁଡ଼ିକୁ ପଥ କଲାପରେ ବି,
କାହିଁକି ବୁଝିଲନି ମୋ ହୃଦୟ କୁ ?

ଜାଣିଥିଲି କେହି କେହି ପୁରୁଷ ନାରୀ କୁ ଦିଅନ୍ତି ପ୍ରତାରଣା,
ଗୋଟେ ନାରୀ ବି ଯେ ସାଜିପରେ ବିଶ୍ୱାସଘାତର ଗନ୍ତାଘର-
ଏହା କି ମୋତେ ଥିଲା ଜଣା ??

ମୁଁ ତ ତୁମକୁ ଭାବିଥିଲି ତୁମେ ମୋ ହୃଦୟର ଦେବୀ,
କିନ୍ତୁ ମସ୍ତବଡ଼ ଭୂଲ କରିଥିଲି ଏମିତି ମନରେ ଭାବି ... !!

ଆଶା କରିଥିଲି ଘର ମୋ ଉଦ୍ଭାସିତ ହେବ
ତୁମ ସନ୍ଧ୍ୟା ଦୀପରେ
ପୁଣି ଭାବିଥିଲି ସକାଳ ନିଦମୋ ଭାଙ୍ଗିବ
ତୁମ ହାତ ତିଆରି ଫୁଟା ଚା'ର ବାସ୍ନାରେ ... !!

କେତେ ଯେ ଆଶା-ଭରସା-ସ୍ୱପ୍ନ ନେଇ ଭାବିଥିଲି
ତୁମ ସଙ୍ଗେ କରିବି ହସ ଖୁସି ଭରା ସୁଖର ସଂସାର,
ଏତେ ସବୁ ଆଶା-ଭରସା-ଭଲପାଇବା-ସ୍ୱପ୍ନକୁ
କେଉଁ ଅଧିକାରେ ପ୍ରିୟା ଭାଙ୍ଗିଦେଇ କଲ ଚୁର୍ମାର ???







# ଗୋଟିଏ ପ୍ରେମ କାହାଣୀ...

ସ୍ୱପ୍ନଲତା ମିଶ୍ର(ରଥ)

ଅଚାନକ ତାଙ୍କ ସହିତ ଦେଖା ହେବାଟା ଯେତିକି ଆଶ୍ଚର୍ଯ୍ୟ ଲାଗିଲା ତାଠୁ ବେଶୀ ଆନନ୍ଦ ଲାଗିଲା । ତିରିଶ ବର୍ଷ ତଳେ ବାଣୀବୀହାରରୁ ପେଡିପୁଟୁଳା ବାନ୍ଧି ସେ ଯେଉଁ ଦିନ ଘରକୁ ଗଲେ, ମାଉସୀ ମାନଙ୍କୁ ଧରି ଏମିତି କାନ୍ଦିଥିଲେଯେ ଆମ ସମସ୍ତଙ୍କ ଆଖି ଲୁହ ଛଳ ଛଳ ହେଇଯାଇଥିଲା । ସତେ ଯେମିତି ଝିଅ ଶାଶୁ ଘରକୁ ଯାଉଛି । ମୋ ଭଳି ଅନେକଙ୍କ ମନରେ କୌତୁହଳ ସୃଷ୍ଟିହେବା ସ୍ୱ-ଭାବିକ କାରଣ ମୋ ପରି ଅନେକ ଥିଲେ ଯେଉଁମାନେ ଛୁଟିହେଲେ ଘରକୁ

ଫେରିଯିବା ପାଇଁ ଦିନ ଗଣୁଥିଲେ । ତେବେ ସେ ଯିବା ସମୟରେ ଆମ ହଷ୍ଟେଲର ସବୁ ଝିଅ ଗେଟ୍ ପାଖରେ ଭିଡ ଜମେଇଥିଲେ, ଜାଣି ହୋଉନଥିଲା ସେ ଏତେ ପ୍ରିୟ ଥିଲେ ସମସ୍ତଙ୍କର ନା ସମସ୍ତେ ସେଠି କୌତୁହଳ ନେଇ ଜମା ହେଇଥିଲେ । କାରଣ ମୋ ବର୍ଷକର ରହଣୀ ଭିତରେ ତାଙ୍କ ବ୍ୟକ୍ତିତ୍ୱର ଆକର୍ଷଣୀୟ ଶକ୍ତିଟିକୁ ମୁଁ ଚିହ୍ନି ପାରିନଥିଲି । ଦେଖାହେଲେ କେବେ କେବେ ହସି ଦିଅନ୍ତି, ମୁଁ ବି ହସିଦିଏ ଉତ୍ତରରେ, ବାସ୍ ସେତିକି ହସରେ ବି ସେମିତି କିଛି ଚମତ୍କାରୀ ନଥିଲା ମନେ ରଖିବା ଭଳି । ମୋଟାମୋଟି ଭାବେ ମୁଁ ତାଙ୍କୁ ଜାଣିନଥିଲି । ତଥାପି ମୁଁ ସେ ଭିଡ ଭିତରେ ଛିଡା ହେଇ ନିଜ ଆଜାଣତରେ ତାଙ୍କ ଭାବ ପ୍ରବଣତାରେ କିଛିକ୍ଷଣ ପାଇଁ ସାମିଲ୍ ହେଇଗଲି । ତାଙ୍କ ରେକ୍ସା ଅଦୃଶ୍ୟ ହେବା ପର୍ଯ୍ୟନ୍ତ ଭିଡ ସେମିତି ଜମି ରହିଲା ଯଦିଓ କଳରେ ପାଣିଆସିବାର ବେଳ କେତେବେଳୁ ହେଇଯାଇଥଲା । ହଠାତ କେହି ଜଣେ ପାଣିଆସିବାର କଥା ମନେ ପକେଇ ଦେବାରୁ ସମସ୍ତେ ଯେମିତି ଜ୍ଞାନ ଫେରିପାଇଲେ ଏବଂ ଅବଶିଷ୍ଟ ପାଣି ପାଇଁ ସମସ୍ତଙ୍କ ଭିତରେ ପ୍ରତିଯୋଗୀତା ଆରମ୍ଭ ହେଇଗଲା । ମାତ୍ର ସାରା ସଂଧ୍ୟା ଏବଂ ବେଶ୍ କିଛି ଦିନ ଧରି ଚର୍ଚ୍ଚାର କେନ୍ଦ୍ରବିନ୍ଦୁ ଥିଲେ କୁନ୍ତଳା ଅପା । ସେଇ ଚର୍ଚ୍ଚାର ସୁଅ ଭିତରୁ ମୁଁ ଯାହା ବୁଝିଥିଲି ପ୍ରକୃତ କାରଣ କାହାକୁ ଜଣାନଥିଲା ଏବଂ ତାଙ୍କୁ ଜାଣିଥିବା କିଛି କିଛି ଝିଅ ମୁକ୍ତ ହସ୍ତରେ କେବଳ ଗୁଡାଏ କାହାଣୀ ବାଣ୍ଟୁଥିଲେ । ତଙ୍କର ଏଇ ଭାବ ପ୍ରବଣତା ଦେଖି ମାଉସୀ ମାନେ ବି ଆଶ୍ଚର୍ଯ୍ୟ ହେଇଥିଲେ କାରଣ ସେମାନଙ୍କ କହିବାନୁସାରେ କୁନ୍ତଳା ଅପା ସେମାନଙ୍କୁ ଏତେ ବେଶୀ ଆପଣାର ପରି ବ୍ୟବହାର ଦୁଇ ବର୍ଷ ଭିତରେ କେବେ ଦେଖେଇ ନଥିଲେ । ହଷ୍ଟେଲର ଯାହାର ଭିଜିଟର ଆସନ୍ତି, ସେମାନଙ୍କ ସହିତ ମାଉସୀ ମାନଙ୍କର ସଂପର୍କ ଘନିଷ୍ଠ ହେଇଯାଏ । ମାତ୍ର କୁନ୍ତଳା ଅପାଙ୍କର କାଁ ଭାଁ କେହି କେମିତି ଭିଜିଟର ଆସନ୍ତି, ବେଶୀ ସମୟ ରୁମ୍ ଭିତରେ କାଟନ୍ତି । କୁନ୍ତଳା ଅପାଙ୍କର ଲୁହ ସର ସର ମୁହଁ ଆଉ ତାର କାରଣ କ'ଣ ହେଇ ଥିବ ଏହି ଆଲୋଚନା ବେଶ୍ କିଛି ଦିନ ପାଇଁ ଆଲୋଡନ ସୃଷ୍ଟି କରିଥିଲେ ମଧ୍ୟ ଅନ୍ୟ ପ୍ରେମୀ ଯୁଗଳ ମାନଙ୍କର ବିଦାୟ କାଳୀନ ଭାବ ବିହ୍ୱଳତା ଭିତରେ ଗୁଜବ ପେଡି ଭିତରୁ ନିଜର ଗୁରୁତ୍ୱ ଆସ୍ତେ ଆସ୍ତେ ହଜେଇ

ବସିଲା ।

ଉପର ବ୍ୟାଚ୍ ପିଲମାନେ ରୁମ୍ ଛାଡିବାର ଅଳ୍ପଦିନ ପରେ ଆମକୁ ସିଙ୍ଗଲ୍ ରୁମ୍ ମିଳିଗଲା । ମୋତେ କୁନ୍ତଳା ଅପାଙ୍କ ରୁମ୍ ମିଳିଲା । ଅନ୍ୟ ସାଙ୍ଗ ମାନଙ୍କ ପରି ମୋତେ ବେଶୀ ହଇରାଣ ହେବାକୁ ପଡିନଥିଲା ରୁମ୍‌କୁ ନିଜ ଢାଞ୍ଚାରେ ସଜେଇବାକୁ  କାରଣ କୁନ୍ତଳା ଅପା ରୁମ୍ ଟିକୁ ବେଶ୍ ସଫା ସୁତୁରା କରି ଛାଡିଥିଲେ । ରୁମ୍ ଭିତରେ ଚନ୍ଦନ ଧୂପର ବାସ୍ନା ତଥାପି ଖେଳିବୁଲୁଥିଲା । କେଜାଣି କାହିଁକି ରୁମ୍‌ରେ ଏକୁଟିଆ ବସିଥିବା ବେଳେ କୁନ୍ତଳା ଅପାଙ୍କର ହଷ୍ଟେଲ୍ ଛାଡିବା ସମୟର ଦୃଶ୍ୟ ଆଖି ଆଗରେ ନାଚିଯାଏ । ମନରେ ଅଦମ୍ୟ ଆଗ୍ରହ ସୃଷ୍ଟି ହୁଏ ଜାଣିବାକୁ ତାଙ୍କ କାନ୍ଦିବାର ପ୍ରକୃତ କାରଣ କଣ ଥିଲା । ସତରେ କଣ ହଷ୍ଟେଲ ଲାଇଫ୍ ତାଙ୍କୁ ଏତେ ଭଲ ଲଗୁଥିଲା । ମୋ ଆଖି ଆପେ ଆପେ ରୁମ୍‌ର ଚାରିପଟ ବୁଲିଆସେ । କାଳେ କିଛି ଉତ୍ତର ମିଳିଯିବ । କିନ୍ତୁ ସବୁଠି ମୋର ଅସ୍ତିତ୍ୱର ପ୍ରମାଣ, କିଛିଦିନ ତଳେ ଏଇ ରୁମ୍‌ଟିକୁ ଏକାନ୍ତ ଭାବେ ନିଜର ବୋଲି ଜାହିର୍ କରୁଥିବା କୁନ୍ତଳା ଅପାଙ୍କର ଚିହ୍ନବର୍ଣ୍ଣ  ନଥାଏ କୋଉଠି । ମୋ ଭଳି କେତେ ଯେ ନିର୍ଜନ ମୁହୂର୍ତ୍ତ କାଟିଥିବେ ସେ ଏଇ ରୁମ୍ ଭିତରେ, କେବେ କେତେ ସ୍ୱପ୍ନ କେତେ କଳ୍ପନା ଭିତରେ ହଜିଥିବେ, କେବେ ପୁଣି ପରାସ୍ତ ସୈନିକର ଗ୍ଲାନି ନେଇ ଏଇ ରୁମ୍ ଭିତରେ ଆତ୍ମଗୋପନ କରି ଥିବେ, କେବେ ପୁଣି ନିଜ ସଫଳତାର କାହାଣୀ ଏଇ କାନ୍ଥ ମାନଙ୍କୁ ଶୁଣେଇଥିବେତ କେତେବେଳେ ଏଇ କାନ୍ଥ ମାନେ ନିରବରେ ତାଙ୍କ ଆଖିରୁ ବୋହୁଥିବା ଲୁହଧାରକୁ ଚୁପ୍‌ଚାପ୍ ନିରୀକ୍ଷଣ କରୁଥିବେ । ମାତ୍ର ମୋ ସହିତ କୁନ୍ତଳା ଅପାଙ୍କର ବ୍ୟକ୍ତିଗତ ଜୀବନର ଅନୁଭୂତି ବାଣ୍ଟିବାକୁ ସେ ଚାରି କାନ୍ଥ ଆଦୌ ପ୍ରସ୍ତୁତ ନଥିଲେ । କେଜାଣି କାହିଁକି ମୋ ଭିତରେ କିନ୍ତୁ ଉତ୍ତର ଜାଣିବାକୁ ଦିନକୁ ଦିନ ଆଗ୍ରହ ବଢିବାକୁ ଲାଗିଲା । ଦୋଳ ଛୁଟିପରେ ଭାଇଙ୍କ ବାହାଘର ପାଇଁ ଆଉ କେତେ ଦିନ ଅଧିକା ଘରେ ରହି ଫେରିବା ପରେ ଜାଣିଲି କୁନ୍ତଳା ଅପା ଆସି ମୋତେ ଖୋଜୁଥିଲେ, ତାଙ୍କରୁମ୍‌ରେ କିଏ ରହୁଛି ବୋଲି ସମସ୍ତଙ୍କୁ ପଚାରୁଥିଲେ । ମାଉସୀମାନେ କହିଲେ ରେଜଲ୍‌ଟ ନେବାକୁ ଆସି ରାତିଟିଏ ରହିବାକୁ ଯାଗା ଖୋଜୁଥିଲେ । ତାଙ୍କର ମନ ଥିଲା ତାଙ୍କ ରୁମ୍‌ରେ କିଛି ସମୟ କାଟିଥାନ୍ତେ । ମୁଁ ତ ନଥିଲି,  ସେ ଆଉ ଜାଗା ବି ପାଇଲେନି ରହିବାକୁ ସେଥିପାଇଁ ସଂଧ୍ୟା ବେଳେ ଫେରିଗଲେ । ସେଦିନ ମୋର କେମିତି ଗୋଟେ ଅଜବ ଅନୁଭୂତି ହେଉଥିଲା । ଆଗରୁ ଜାଣିନଥିବା କୁନ୍ତଳା ଅପାଙ୍କ ପାଇଁ ବ୍ୟସ୍ତ ଲଗିଲା । ମନେ ମନେ ଭାବିଲି ଏଇ କିଛିଦିନ ତଳେ ହଷ୍ଟେଲ୍ ଛାଡି ଗଲାବେଳେ ଲୁହର ଝରଣା ବୁହେଇଥିବା କୁନ୍ତଳା ଅପାଙ୍କୁ ରାତିଟେ ରହିବା ପାଇଁ ଜାଗା ଟିକେ ମିଳିଲାନି ।"ଆଉ କେବେ ଆସିଲେ ମୋତେ ନିଶ୍ଚୟ କହିବ" ମାଉସୀଙ୍କୁ କହିଲି ।

କିଛିଦିନ ପରେ ସହଜରେ ମୋ ହାତ ପାଉନଥିବା କପ୍‌ବୋର୍ଡର ସଭା ଉପର ଥାକରେ କିଛି ଅଦରକାରୀ ନୋଟ୍‌ବୁକ୍ ସବୁକୁ ରଖୁ ରଖୁ ମୁଁ  ଅନୁଭବ କଲି ଭିତର ଆଡକୁ ଥଳିଟିଏ ଥିବା ଭଳି । ମୋର ମନେ ପଡୁନଥିଲା ମୁଁ କେବେ କିଛି ଆଗରୁ ସେଠି ରଖିଥିବା ପରି । ଚଉକୀଟିଏ ଟାଣି ଆଣି

କାଢିଆଣିଲି ଥଳୀଟିକୁ । କଳାରଙ୍ଗର ପିପିଲିବ୍ୟାଗ୍‌ଟିଏ । କୌତୁହଳ ନେଇ ଅଜାଡି ପକେଇଲି, ଗୋଟିଏ ଡାଇରୀ ଓ କିଛି ଚିଠି ପରି ମନେ ହୋଉଥିବା କାଗଜ ଗୁଡାଏ ଅଜାଡି ହେଇ ପଡିଲା । ଡାଇରୀଟି କାହାର କହିବା ସମ୍ଭବ ନଥିଲା କେଉଁଠି କିଛି ନା ଲେଖା ହେଇନଥିଲା , ଚିଠିରେ କିଛି ସଂବୋଧନ ନଥିଲା , ଇତିରେ କାହା ନା ନଥିଲା । ତଥାପି ମନେ ମନେ ଧରି ନେଇଥିଲି ସେ ସବୁ କୁନ୍ତଳା ଅପାଙ୍କର ସଂପତ୍ତି । ପ୍ରଥମେ ପ୍ରଥମେ ସେ ସବୁ ନ ପଢିବା ପାଇଁ ବହୁତ ପ୍ରଚେଷ୍ଟା କରିଲି । କିନ୍ତୁ ଆସ୍ତେ ଆସ୍ତେ ମନରେ କୌତୁହଳ ସୃଷ୍ଟି ହେଲା । ତାପରେ ସେ ଡାଇରୀ ଆଉ ସେ କବିତା ସବୁ ମୋ ଅବସର ସମୟର ସାଥି ପାଲଟି ଯାଇଥିଲେ ।

କୁନ୍ତଳା ଅପା ଯେ ଏକ ଗୋପନ ପ୍ରେମ କାହାଣୀର ନାୟିକା ଥିଲେ ଏ କଥା ଆମେ କେହି ଜାଣି ନଥିଲୁ । ମୋ ଗୁପ୍ତ ଧନ ପ୍ରାପ୍ତି କଥା ଜଣା ପଡିଥିଲେ ହଷ୍ଟେଲରେ ହଇଚଇ ସୃଷ୍ଟି ହେଇ ଯାଇଥାନ୍ତା ଆଉ ମୁଁ ହଠାତ ସେଲିବ୍ରିଟି ପାଲଟି ଯାଇଥାନ୍ତି …ଗସିପ୍ କୁଇନ୍ ମାନଙ୍କର ଭିଡ ଜମିଥାନ୍ତା ମୋ ରୁମ୍‌ରେ । କିନ୍ତୁ କେଜାଣି କାହିଁକି ମୋର ଇଛା ହେଲାନି କାହାକୁ ସେ ବିଷୟରେ କିଛି କହିବାକୁ, ଏମିତିକି ମୋର ଘନିଷ୍ଠ ବାନ୍ଧବୀ ସାଙ୍ଗେବି ମୁଁ ସେୟାର୍ କରିବାକୁ ଚାହିଁଲିନି । ତାପରେ ସେ ଡାଇରୀ ଆଉ ସେ କବିତା ସବୁ ମୋ ଅବସର ସମୟର ସାଥି ପାଲଟି ଯାଇଥିଲେ, ଏକ ଅନନ୍ୟ ପ୍ରେମମୟ ପରିବେଶ ଭିତରେ ମୋ ନିଃସଙ୍ଗ ମୁହୂର୍ତ୍ତ ସବୁ ଧିରେ ଧିରେ ବିଲିନ୍ନ ହେଇ ଯାଉଥିଲେ । ରଚନାର ଅନନ୍ୟ ଶୈଳୀ, ଭାବ ଓ ଭାଷାର ସମନ୍ୱୟ ସବୁ କେମିତି ଏକ ମଧୁମୟ ପରିବେଶ ସୃଷ୍ଟି କରୁଥିଲେ ମୋ ଚାରିପାଖେ । ଏମିତି ଚୁପ୍ ଚାପ୍ ହେଇ ରହୁଥିବା ଝିଅଟିଏ ପୁଣି ଏମିତି ରୋମାଣ୍ଟିକ୍ କବିତା ଲେଖିପାରେ ମୁଁ କଳ୍ପନା କରି ପାରୁ ନଥିଲି । କବିତା ଲେଖିବା ସୌକ ମୋର ବି ଥିଲା ମାତ୍ର ଜୀବନ ଧର୍ମୀ କବିତା, ପ୍ରେମ କବିତା ଲେଖିବାକୁ ଚେଷ୍ଟାକରି ବିଫଳ ହେଇଥିଲି ଅନେକ ଥର । ତେଣୁ କୁନ୍ତଳାଅପାଙ୍କର କବିତା ମୋ କବିପ୍ରାଣକୁ ମୋହାବିଷ୍ଟ କରି ରଖୁଥିଲା । ଆସ୍ତେ ଆସ୍ତେ ମୋ ମନରେ ଆଗ୍ରହ ସୃଷ୍ଟି ହେଲା ଜାଣିବାକୁ କିଏ ତାଙ୍କ ପ୍ରେରଣାର ଉତ୍ସ, କାହା ପାଇଁ ସମର୍ପିତ ଥିଲା ତାଙ୍କ ପ୍ରାଣ ଆଉ ମନ, କାହାପାଇଁ ରଚୁଥିଲେ କଳ୍ପନାର ଅଭିସାର, କାହା ସହିତ ବାନ୍ଧୁଥିଲେ ସ୍ୱପ୍ନର ନୀଡ । ମନରେ ସୃଷ୍ଟି ହୋଇଥିଲା ଅନେକ ପ୍ରଶ୍ନ । କିନ୍ତୁ ଉତ୍ତର ମିଳିବା ସମ୍ଭବ ନଥିଲା, କାରଣ କୋଉଠିବି ଲେଖା ନଥିଲା ତାଙ୍କ ପ୍ରେମିକଙ୍କର ନା ବା ଠିକଣା । ମୋତେ ବି ଜଣା ନଥିଲା କୁନ୍ତଳା ଅପାଙ୍କ ଠିକଣା । ତେଣୁ ତାଙ୍କ ଧନ ତାଙ୍କ ପାଖକୁ ପଠେଇଦେବା ସୁବିଧା ହେଲାନି । ତାଙ୍କୁ ଜାଣିଥିବା ଝିଅମାନେ ବି ତାଙ୍କ ବିଷୟରେ କିଛି କହି ପାରିନଥିଲେ । ସେ କେବେ କାହାକୁ ପ୍ରେମ କରୁଥିବା କଥା କେବେ କେହି କହିବାର ଶୁଣୁ ନଥିଲି ମୁଁ । ତେଣୁ ପ୍ରେମିକ ପୁରୁଷଟିର ଅସ୍ତିତ୍ୱ ନେଇ ମୋ ମନରେ ଅନେକ ପ୍ରଶ୍ନ ଥିଲେବି ମୁଁ ସ୍ଥିର କରିଥିଲି ଏ ବିଷୟରେ ଚୁପ୍ ରହିବାକୁ । ସେ ବିଷୟରେ କାହାକୁ ପଚାରି କୁନ୍ତଳା ଅପାଙ୍କ ନାରେ ଅପବାଦର କାଳିମା ବୋଳିବାକୁ ମୋତେ ସାମାନ୍ୟ ମାତ୍ର ଆଗ୍ରହ ଆସୁନଥିଲା । ଅଥଚ ମୋ ମନରେ ପ୍ରତିଦିନ ତାଙ୍କ କବିତା ଆଉ କବିତାର ଧାରାରେ, ଅମୃତର ଆହ୍ୱାନରେ ଲେଖା

ହେଇଥିବା ଚିଠି ସବୁ ପଢିବାର ଆଗ୍ରହ ଥିଲା ଅଦମ୍ୟ । ତାଙ୍କ ନାମହୀନ ପ୍ରେମିକ ପ୍ରତି ତାଙ୍କ ମନ ଭିତରେ ଥିଲା ଅଜସ୍ର ପ୍ରୀତି, ହୃଦୟରେ ଥିଲା ଅସରନ୍ତି ପ୍ରତିଶୃତି । କିନ୍ତୁ କେଉଁଠି ବି ନଥିଲା ସେ ଦୂର୍ଲଭ ପ୍ରୀତି ପାଇଁ ପ୍ରେମିକଠାରୁ ପ୍ରାପ୍ତିର ସ୍ୱିକୃତୀ ଅବ ପ୍ରେମର ସ୍ୱାକ୍ଷର । ସେ ଯିଏ ବି ହେଉ, ଜାଣୁ ବା ନଜାଣୁ ସେ ନିଷ୍ଚୟ ଭାଗ୍ୟବାନ, ସେ କ'ଣ ଜାଣିଥିଲା କେହି ଜଣେ ତା ପାଇଁ ନିଃସର୍ତ୍ତରେ ଦୀପଟିଏ ଜାଳିବସିଥିଲା, ଶବ୍ଦର ସମୁଦ୍ରରେ ବୁଡିରହି କବିତାର ମୋତି ମାଳା ଗୁନ୍ଥୁଥିଲା, ମହମବତୀଟିଏ ଭଳି ଜଳୁଥିଲା ଅହରହ, ନିଜ ଦୁନିଆରେ ନିଜ ପ୍ରେମର ଦିପାଳୀ ଧରି ଅପେକ୍ଷି ରହିଥିଲା , ବାଟ ଚାହିଁ ବସି ବସି କବିତା ଲେଖୁଥିଲା …

ତୁମେ ଆସିବ!

ତୁମେ ଆସିଲେଇ ଅପଣା ଛାଏଁ ବଦଳିଯିବ ସବୁ,

ପୃଥିବୀଠୁ ଆକାଶ ଯାଏଁ ସବୁଆଡେ ଭରିଯିବ

ପ୍ରେମମୟ ବୈଚିତ୍ର୍ୟ ବୈଭବ ।

କଥା ଦିଅ କି ନଦିଅ

ଦୁଃଖ ନାହିଁ, ବାଟ ଚାହିଁ ରହିଥିବି

ଯୁଗରୁ ଯୁଗାନ୍ତର

ଜନ୍ମରୁ ଜନ୍ମାନ୍ତର

ନିଜକୁ ବୁଝେଉଥିବି

ତୁମେ ଆସିବ ।

କାରଣ,

ମୁ ଜାଣିଛି

କେବେନା କେବେତ

ତୁମେ ଆସିବ,

ନିଷ୍ଚୟ ଆସିବ ।

ଆଶା ଥିଲା କୁନ୍ତଳା ଅପା ଆଉଥରେ ଆସିବେ । ସେ ଯୋଉ ଥରୁଟିଏ ଆସିଥିଲେ ବୋଧହୁଏ ଦୈବାତ ଛାଡିଯାଇଥିବା ତାଙ୍କ ଗୁପ୍ତଧନକୁ ଫେରେଇନେବା ପାଇଁ, ହୁଏତ ସେଥିପାଇଁ ତାଙ୍କ ରୁମ୍ ରେ

କିଏ ରହୁଛି ଜାଣିବାକୁ ଚାହିଁଥିଲେ । କିନ୍ତୁ ସେ ଆଉ କେବେ ଆସିନଥିଲେ । କୁନ୍ତଳା ଆପା ମୋତେ ତ ଅଜଣା ଝିଅଟିଏ ଭଳି ଲଗୁନଥିଲେ ଆଉ, ପ୍ରିୟ ଅନ୍ତରଙ୍ଗ ବାନ୍ଧବୀ ଟିଏ ପରି ଲାଗୁଥିଲେ ଯିଏ ନିଃସଙ୍କୋଚରେ ମୋ ଆଗରେ ହୃଦୟର ଅନୁଭବକୁ ଖୋଲି ଦେଇଥିଲେ । ହଷ୍ଟେଲ ଛାଡିବା ବେଳେ ମୁ ତାଙ୍କ ସଂପତ୍ତିକୁ ସାଙ୍ଗରେ ନେଇ ଯାଇଥିଲି ସିନା କିନ୍ତୁ ଘରେ ପହଞ୍ଚିବା ପରେ ଆଉଥରେ ତାକୁ ଖୋଲି ମନ ଭରି ପଢିବାର ସୁଯୋଗ ମିଳିନଥିଲା । ହଷ୍ଟେଲ ରୁମ୍‌ର ଚାରିକାନ୍ଥ ଭିତରର ଏକାନ୍ତ ପରିବେଶ ଭିତରେ ସେ ସବୁ ପଢିବାର ଯେଉଁ ଅଦମ୍ୟ ନିଶା ଘରେ ପହଞ୍ଚି ଭାଇ ଭଉଣୀଙ୍କର କୋଳାହଳ ଭିତରେ ସେ ଆପେ ଆପେ କୁଆଡେ ହଜିଗଲା । ମାତ୍ର ଏ ପର୍ଯ୍ୟନ୍ତ ସେ କବିତାର ପଦ ମନ ଭିତରେ ବସା ବାନ୍ଧିରହିଛନ୍ତି । କେବେ ଭୁଲି ହେଇନି ସେଇ ଏକାନ୍ତ ବେଳାର ସେଇ ପ୍ରେମ କବିତା ସବୁ ପଢିବାର ରୋମାଞ୍ଚକର ଅନନ୍ୟ ଅନୁଭୂତି । ହଷ୍ଟେଲ ଛାଡିବାର ପୂର୍ବ ରାତିରେ ମୁଁ ବୁଝି ପାରିଥିଲି କୁନ୍ତଳା ଅପାଙ୍କର ହଷ୍ଟେଲ ଛାଡିଲା ବେଳେ ବିକଳ ହେଇ କାନ୍ଦିବାର କାରଣ । ଏକାନ୍ତ ଭାବରେ ନିଜସ୍ୱ ଏକ ପରିବେଶ କୁ ହରେଇବାର ଦୁଃଖରେ ବ୍ୟଥିତ ଥିଲେ ସେ । ଚାରି କାନ୍ଥ ଥିଲା ତାଙ୍କ ସ୍ୱର୍ଗ ... ବାହାରର କୋଳାହଳ ଭିତରୁ ମୁକୁଳି ଯାଇ ସେଇଠି ନିଜ କଳ୍ପନାର ଦୁନିଆରେ ହଜି ଯାଉଥିଲେ , ଶବ୍ଦର ଦୁନିଆରେ ମଜିଯାଉଥିଲେ । ସ୍ମୃତି ଆଉ ସ୍ୱପ୍ନଙ୍କ ଲୁଚକଳି ଖେଳରେ ସଂପର୍କର ସଂଜ୍ଞା ବୁଝୁଥିଲେ । ଶେଷ କବିତାର ଶେଷ ପଦ ଥିଲା ...

ଜାଣେନା, ଆଉ କେବେ

ଦେଖା ହେବକି ନହେବ

କଥା ଦିଅ...

କେବେ ଭୁଲିବନି

ଭୁଲିଗଲା ବୋଲି ଭାବିନେବନି ।

କିନ୍ତୁ କିଏ ସେଇ ଭାଗ୍ୟବାନ ଯାହାପାଇଁ ଏ ଅନବଦ୍ୟ ପ୍ରେମର ସନ୍ଦେଶ ?ଅନେକଥର ମନରେ ପ୍ରଶ୍ନ ଆସିଛି କ'ଣ ହେଇଥିବ ଶେଷ ପରିଣତି! ସତରେ କୁନ୍ତଳା ଆପାଙ୍କର ମିଳନ ହେଇଥିବ ତାଙ୍କ ମନର ମଣିଷ ସହିତ । ଯଦି ନ ହେଇଥିବ କେତେ ଭାଙ୍ଗି ପଡିଥିବେ ସେ ଭିତରେ ଭିତରେ । ଆଖି ସାମ୍ନାରେ ସ୍ୱପ୍ନମାନଙ୍କର ସାମୂହିକ ସମାପ୍ତିକୁ ସହିପାରିଥିବେ ସେ? ମନେ ପଡିଯାଏ କୁନ୍ତଳା ଅପାଙ୍କର ଅଉ ଗୋଟିଏ ଗୋଟିଏ କବିତାର ପଦ ...

ମୋ ଭାଗ୍ୟକୁ ଆଦରି ନେବାକୁ କହୁଛ ଯେ....

ଏ ଭାଗ୍ୟକୁ ମୁଁ ମୋର ବୋଲି କେମିତି ମାନିବି

କାହିଁକି ମାନିବି

ଯଦି ସେ ଦେବନି ମୋତେ ମୋର ପ୍ରାପ୍ୟ,

ତାଙ୍କୁ କଣ ଜଣା ନାହିଁ

ତୁମେ, ତୁମେ ମୋର ଏକାନ୍ତ କାମ୍ୟ ।

ସତରେ କ' ଣ ତାଙ୍କ ଭାଗ୍ୟର ଦୟାରୁ ତାଙ୍କର କାମ୍ୟ ଓ ପ୍ରାପ୍ୟକୁ ତାଙ୍କୁ ମିଳିଛି ? ଏମିତି ଅସୁମାରୀ ପ୍ରଶ୍ନ ଥିଲା ମୋ ମନରେ, ଆଶା ଥିଲା କେବେ ଭେଟ ହେଲେ ପଚାରିବି । କିନ୍ତୁ ସମୟ ତା ବାଟରେ ଆଗେଇଗଲା । କେବେ ବି କୁନ୍ତଳା ଅପାଙ୍କ ସହ ଭେଟ ହେବା ଦୂରର କଥା ତାଙ୍କ ବିଷୟରେ କାହାଠୁ କିଛି ମୁଁ ଶୁଣି ନଥିଲି ।

ଆଜି ଅଚାନକ ଏତେ ବର୍ଷ ପରେ ବି କୁନ୍ତଳା ଅପାଙ୍କୁ ଦେଖି ଚିହ୍ନିବାରେ ବେଶୀ କିଛି ଅସୁବିଧା ହେଲାନି । ଆଖି ରେ ଚଷମା ଆଉ ମୁଣ୍ଡବାଳ ଟିକେ ଧଳା ହେଇ ଆସୁଛି ଯାହା । ପରିଚୟ ସମୟରେ ଜାଣିଲି ସ୍ୱାମୀ ଙ୍କ ସାଙ୍ଗରେ ପୁଅ ବୋହୁଙ୍କ ପାଖକୁ ବୁଲି ଆସିଛନ୍ତି । ଭାବିନଥିଲି ମୋତେ ସେ ଚିହ୍ନି ପାରିବେ । ତାଙ୍କ ତଳ ବ୍ୟାଚ୍ ଝିଅ ଆଉ ମୋ ନା ଜାଣିବା ପରେ ସେ ନିଜ ଆଡୁ କହିଥିଲେ "ମୋ ପରେ ତୁମେ ମୋ ରୁମ୍‌ରେ ଥିଲ?"। ସତେ ଯେମିତି ବର୍ଷ ବର୍ଷ ର ଆତ୍ମୀୟତା ଆମ ଭିତରେ । କୁଣ୍ଢେଇ ପକେଇଲେ । ଏମିତି କଥା ଛଳରେ ମୁଁ ପଚାରିଦେଲି "ଆଉ କ'ଣ କବିତା ଲେ-ଖୁଛନ୍ତି, ଇଏ କଣ ସିଏ" । ହସିଦେଇ ଉତ୍ତର ଦେଇଥିଲେ, " ମୁଁ ଜାଣିଥିଲି ତୁମେ ଏକୁଟିଆ ସବୁ ଜାଣିଥିବ...", "ରେଜଲ୍‌ଟ ବାହାରିବା ପରେ ପରେ ବାହାଘର ହେଇଗଲା ଆଉ ସୁବିଧା ହେଲାନି ହଷ୍ଟେଲ୍ ଯାଇ ତୁମକୁ ଆଉଥରେ ଖୋଜିବାକୁ, ଇଏ ସେ ନୁହନ୍ତି । ଅଜାଣତରେ ଦୀର୍ଘଶ୍ୱାସଟିଏ ବାହରି ଆସିଲା, ପଚାରିଲି, " ବାଣୀବିହାରରୁ ଆସିବାପରେ ତାଙ୍କ ସହିତ ଆଉ ଭେଟ ହେଇ ପାରିଲନି ସତରେ?" ଅଳ୍ପ ହସି ଉତ୍ତର ଦେଲେ ... "କିନ୍ତୁ ମୁଁ ତ ସେ ରୁମ୍‌ରୁ ବାହାରିକି ଆସିବା ପରେ ଆମ ଠିକଣା ବଦଳି ଗଲା, କାହାଣୀ ଆଉ ଆଗକୁ ବଢିବ କେମିତି?"। "ତାଙ୍କ ଠିକଣା ନଥିଲା" ପଚାରିଥିଲି, "ଏତେ ଗଭୀର ସଂପର୍କ ସତ୍ତ୍ୱେ!" । ହସି ହସି ଗଡିଗଲେ କହିଲେ, "ତାଙ୍କ ଠିକଣା ମୋ କଳ୍ପନା ଭିତରେ ଥିଲା, ବାହାର ଦୁନିଆରେ ତାଙ୍କର ଠିକଣା ନଥିଲା କୋଉଠି, ତାଙ୍କ ଠିକଣା ଥିଲା ମୋ ଡାଇରୀ ପୃଷ୍ଠାରେ, ତାଙ୍କ ଠିକଣା ଥିଲା ମୋ କବିତା ଭିତରେ, ସାଙ୍ଗ ମାନଙ୍କ ନଜରରୁ ଲୁଚୋଉ ଲୁଚୋଉ ଭୁଲରେ ସେସବୁ ଛାଡି ଦେଇ ଆସିଲି ସେଦିନ, ସେ ସେଠି ରହିଗଲେ, କେବେ ସେ ରୁମ୍‌ରୁ ବାହାରି, ମୋ ପାଖେ ପହଞ୍ଚି ପାରିଲେନି । ପ୍ରଥମେ ପ୍ରଥମେ ତାଙ୍କୁ ଛାଡି ବଞ୍ଚିବା କଷ୍ଟ ହେଲା, ଆସ୍ତେ ଆସ୍ତେ ଦେହସୁହା ହେଇଗଲା, ଆଉ ଏଙ୍କ ଭିତରେ ତାଙ୍କୁ ଖୋଜୁଛି ଗଲା ଅଠେଇଶ ବର୍ଷ ହେଲାଣି " ।

ବିଶ୍ୱାସ କରିବି କି ନା ଜାଣି ପାରୁନଥିଲି । ଠୋପା ଠୋପା ଲୁହ ର ଦାଗରେ ଭର୍ତ୍ତି ବିରହ କବିତା ସବୁ କାହା ଉଦ୍ଦେଶ୍ୟରେ ନଥିଲା, ସ୍ମୃତି ଆଉ ସ୍ୱପ୍ନଙ୍କ ଡେଣା ରେ ବସି ଲେଖା ଯାଇଥିବା କବିତା ସବୁର କାବ୍ୟ ପୁରୁଷ କଳ୍ପନା ପ୍ରସୂତ ଥିଲେ , କ'ଣ କହିବି ଜାଣି ପାରୁନଥିଲି । ମୋ ମନ କଥା ବୁଝିପାରି କୁନ୍ତଳା ଅପା କହିଲେ , "ତୁମେ ସତରେ ବିଶ୍ୱାସ କରୁନ? ବିଶ୍ୱାସ କର ସେ ସବୁ ମୋ ନିଃସଙ୍ଗ ବୋଧ କଟେଇବାର ଏକମାତ୍ର ଉପାୟ । କାହାକୁ ଭଲ ପାଇବାର ସାହସ ନଥିଲା, କାହା ମନ ଜିଣିପାରିବାର ବିଶ୍ୱାସ ନଥିଲା, କିନ୍ତୁ ସ୍ୱପ୍ନ ଦେଖିବାକୁ ମନା ନଥିଲା, ସ୍ୱପ୍ନ ଦେଖିବାରେ କ୍ଷତି କ'ଣ ?" ।

ମନେ ପଡିଗଲା କୁନ୍ତଳା ଅପାଙ୍କ କବିତାର ଆଉ ଗୋଟେ ପଦ.... ଆବୃତ୍ତି କଲି,

ଏ ଜୀବନ କୁ ମୋର ବୋଲି କହିବିନି

ନିଜେ ଯଦି ଶିଖେଇବନି ମୋତେ ସିଏ ଜିଇଁବାର ଶୈଳୀ

ଏ ଜୀବନ କୁ ମୋର ବୋଲି କେମିତି ଭାବିବି

ନିଜେ ଯଦି ଜାଣିବିନି, ବୁଝିବିନି ଜିଇଁବାର କଳା ।

ପଚାରିଲି, କାହାର କବିତା କହିଲେ । ମନେ ପଡିଲାନି ତାଙ୍କର ସେଇଟା ତାଙ୍କ ନିଜ କବିତା ବୋଲି । କୁନ୍ତଳା ଅପା ଆଶ୍ଚର୍ଯ୍ୟ ହେଲେ ମୁଁ ତାଙ୍କ କବିତା ମନେ ରଖିଛି , ଅଥଚ ତାଙ୍କର ମନେ ନାହିଁ । ମୁଁ ଭାବୁଥିଲି ...କବିତା ମନେ ରଖିଛି କହୁଛ, ତୁମେ କେମିତି ଜାଣିବ ମୁଁ ଏତେ ଦିନ ଧରି ତୁମର ଯେଉଁ ପ୍ରେମିକ ପୁରୁଷଟିକୁ ଖୋଜିବୁଲୁଛି ଦେଖାହେଲେ ତୁମ ମନ କଥା କହିବାକୁ, ଆଜି ତୁମେ ମୋତେ କହୁଛ ସେ ଅସ୍ତିତ୍ୱ ବିହୀନ, ସେ ତୁମ ମାନସ ପୁରୁଷ । କିନ୍ତୁ ଆଉ କିଛି କହି ପାରିଲି ନାହିଁ, ତାଙ୍କ ବୋହୁ ଯିବା ପାଇଁ ଡାକୁଥିଲା । ଆଉଥରେ ଦେଖା ହେବ କହି ବିଦାୟ ମାଗିଲି । ରାସ୍ତାସାରା ନିଜକୁ ନିଜେ ହସୁଥିଲି ଯେ ... ତାହେଲେ ଗୋଟିଏ କେବେ ଘଟିନଥିବା ପ୍ରେମକାହାଣୀର ଏକମାତ୍ର ସାକ୍ଷୀ ମୁଁ !



# ଏଇ ମନ

ବିଦ୍ୟାଧର ପଣ୍ଡା

ହଜିବାକୁ ଅଛି,

ଆହୁରି ଅନେକ ଯୁଗ,

ଅଦେଖା ସୁଖର ଚଇତାଳିରେ।

ବସିବାର ଇଛା ବି,

ମଉଜର ସପ ପରା

ସରୁ-ବାରଣ୍ଡାର।

କଳ୍ପ । ବି ସରିହିଁ,

ଗୁପ୍ତଚର ସାଜି

ସନ୍ଧାନରେ ଯିବାକୁ ସୁଖର ସାଗର।

ପରିଚିତ ଛଳନାର

ଛଦ୍ମବେଶ ନେଇ·

ଛୁଆଁ ଟିକେ ପାଇବାକୁ ଅସଲ ପ୍ରେମର।

କେତେ କେତେ ଆବର୍ତ୍ତ-ସଂଘାତର

କାନ ମୋଡା ଖାଇ,

ବଞ୍ଚିବାର କଳା ଶିଖିଛି ଜୀବନ-

ଯାବତୀୟ ଯନ୍ତ୍ରଣାର ମୂକସାକ୍ଷୀ,

ଏଇ ଶରୀରକୁକେବେ

କ'ଣ ଛାଡ଼ିପାରେ ମନ?



# ଭ୍ରମଣ କାହାଣୀ

-ବିଶାଖା ପାଟଣା-

... (ପୂର୍ବ ପ୍ରକାଶିତ ଉତାରୁ...) ପ୍ଲାଟଫର୍ମରୁ ବାହାରି ଆସିଲା ବେଳେ ଭାବୁଥିଲି ଏ ଅଣଓଡ଼ିଆ ସହରରେ କୁଆଡ଼େ ଯିବି ଏବଂ କେଉଁଠି ରହିବି ? ହାତଟା ବାରମ୍ବାର ପ୍ୟାଣ୍ଟ୍ ପକେଟ୍ ଆଡ଼କୁ ଚାଲିଯାଉଥାଏ । ମନିପର୍ସଟାକୁ ଛୁଇଁ ଦେଇ ଆଶ୍ୱସ୍ତ ହେଉଥାଏ, କାରଣ ଏହି ପାଞ୍ଚ ହଜାର ଟଙ୍କା ହିଁ ମୋର ପାଥେୟ ।

ଫଟ୍ ଫଟ୍ ଫଟ୍... ହୋଇ ଟେମ୍ପୋଟାଏ ମୋ ନିକଟରେ ପହଞ୍ଚି ଅଟକିଗଲା । ଚାଳକ ଜଣକ ଜବରଦସ୍ତ କଲା ଭଳି ପଚାରିଲା "ଏ ଜେଡ଼କି ବେଲେତାରୁ ?" କାଲା ଆଗରେ ମୂଳା ଚୋବାଇଲା ଭଳି ତା କଥା ମୋର ଗୋଟିଏ କାନରେ ପଶି ଆର କାନରୁ ବାହାରିଗଲା । କିନ୍ତୁ ବ୍ରହ୍ମପୁରରୁ ଶିଖିଥିବା ଗୋଟିଏ ତେଲୁଗୁ ଧାଡ଼ି ତାକୁ କହିଲି, "ତେଲୁଗୁ ରାଦୁ" ଅର୍ଥ ତେଲୁଗୁ ଜଣାନାହିଁ ।

ସେ ମୋତେ ନିଶ୍ଚୟ ପାଗଳଟିଏ ବୋଲି ଭାବିଥିବ, କାରଣ ମୁଁ ତାକୁ ତେଲୁଗୁ ଆସୁନାହିଁ ବୋଲି ତେଲୁଗୁ ରେ ହିଁ କହିଥିଲି ।

ସେ ମୋର ଅସମଞ୍ଜସତାକୁ ହୃଦୟଙ୍ଗମ କରିପାରିଲା ବୋଧହୁଏ... ତେଣୁ ଭଙ୍ଗା ହିନ୍ଦୀରେ ପଚାରିଲା, "କହାଁ ଜାତା ଓଏ ?"

ଏଇଟା ହେଲା କଥା ! ବାସ୍ ମୁଁ ହିନ୍ଦୀ କୋବିଦ ପଣ୍ଡିତ ଭଳି କହିଲି "ଲଜିଙ୍ଗ୍ ଯାଏଗା କ୍ୟା ?" ସେ ପୁଣି ପଚାରିଲା, "ଅଚ୍ଛା ମାଙ୍ଗତା ହେ, ୟା କାମଚାଲୁ ?"

ସତେ ଯେପରି ମୋର ଆଭିଜାତ୍ୟକୁ ସେ ଭାଙ୍ଗିଦେଲା ।

ମୁଁ ଟିକେ ଛାତିଟାକୁ ଉପରକୁ ଉଠାଇ ଦେହର ଠାଣୀ ବଦଳାଇ କହିଲି, "ଶସ୍ତା ନେହିଁ ଚାହିଏ... ଅଚ୍ଛା ବାଲା ଚାହିଏ ।"

ସେ ରାଜିହେଲା । ବହୁତ କଥା କଟାକଟି ପରେ ସେ ୧୫ ଟଙ୍କା ନେବ ବୋଲି ଠିକ୍ ହେଲା ଏବଂ ସେ ମୋତେ ରାଜ୍ ରେସିଡେନ୍ସି ଲଜିଂଗ୍‌ରେ ନେଇ ଓହ୍ଲାଇଦେଲା ।

ପ୍ରଥମରୁ ହିଁ କହିଦେଇଛି ଯେ ମୋର ଜୀବନର ଏହା ପ୍ରଥମ ରେଳଯାତ୍ରା ଥିଲା । ହେଲେ ଏବେ ଲଜିଙ୍ଗ ରେ ରହିବାଟା ବି ପ୍ରଥମଥର ହିଁ ଥିଲା ।

ଅଟୋଚାଳକ ମୋତେ ସେଠାରେ ଓହ୍ଲାଇଦେଇ, ମୋର ବ୍ୟାଗ ଟାକୁ ନେଇ ରିସେପ୍‌ସନ୍ ନିକଟରେ ରଖି ତେଲୁଗୁରେ କିଛି କଥା ହେଲା ।

ପିଲାଦିନୁ ପ୍ରମୋଦ କିଶୋର ପଣ୍ଡା, ବିଜୟ କୁମାର ରଣା ଏବଂ କସ୍ତୁରୀ ଚରଣ ଦାଶଙ୍କ

ବଢି ପଡୁଥିଲି ଏଣୁ ମୋର ସନ୍ଦିହାନ ଚକ୍ଷୁଟି ଅଟୋଚାଳକର ସମସ୍ତ ଭଙ୍ଗୀକୁ ନିରୀକ୍ଷଣ କରୁଥିଲା । ମୁଁ ଏତିକି ବୁଝିପାରୁଥିଲି ଯେ ସେ ମୋତେ ଏକ ରୁମ୍ ଦରକାର ବୋଲି ରିସେପ୍ସନିଷ୍ଟକୁ କହୁଥିଲା । ତା'ପରେ ସେ ରିସେପ୍ସନିଷଟ୍ଙ୍କଠାରୁ ୨୦ ଟଙ୍କିଆ ନୋଟ୍ଟିଏ ଧରି ମୋ ନିକଟକୁ ଆସିଲା ଓ ଭଙ୍ଗା ହିନ୍ଦୀରେ କହିଲା, "ଆଚ୍ଛା ରୁମ୍ ମିଲେଗା, ମୈ ବୋଲ୍ଦିଆ ।" ଏତକ କହି ତେଲୁଗୁ ଫିଲ୍ମ "ଗୀତାଞ୍ଜଳୀ"ର 'ଓ ପ୍ରିୟା ... ପ୍ରିୟା...' ଗୀତ ଗାଇ ଚାଲିଗଲା ।

ମୁଁ ସମ୍ବିତ୍ ଫେରିପାଇ ପକ୍କା ଇଂରାଜୀରେ ରିସେପ୍ସନିଷ୍ଟକୁ ବୁଝାଇ କହିଲି, ମୁଁ ସେ ଅଟୋବାଲାକୁ ତ ୧୫ ଟଙ୍କା ଦେଲି ହେଲେ ମୋତେ ନ ପଚାରି ଆପଣ ପୁଣି ତାକୁ ୨୦ ଟଙ୍କା କାହିଁକି ଦେଲେ ? ଯୁବତୀ ଜଣକ ମୁହଁରେ ପ୍ରଶିକ୍ଷିତ ହସଟିଏ ଖେଳାଇ କହିଲେ, "ସାର୍ ସେଇଟା ତା'ର କମିଶନ୍ ।" ବାବାରେ... ଏଥିରେ ବି କମିଶନ୍ ?

ଏ ଦେଶରେ ଅଟୋବାଲାର ଛୋଟ କମିଶନଠୁଁ ଆରମ୍ଭ କରି ରାଜନେତା ମାନଙ୍କର କୋଟି କୋଟି ଟଙ୍କାର କମିଶନ୍, ଦେଶଟାକୁ ରସାତଳଗାମୀ କରି ଚାଲିଛି । ହେଲେ ତୁମେ ଆଉ ମୁଁ ମିଶି ଏହାର ଉଦ୍ଧାର କିପରି କରିବା !

ଏଠାରେ ପାସପୋର୍ଟ ପାଇଁ, ବାସସ୍ଥାନ ପ୍ରମାଣପତ୍ର ପାଇଁ, ସିପାହୀ ସୈନିକ ମାନଙ୍କ ପେନ୍ସନ୍ ପାଇଁ ସବୁଠି କମିଶନ୍ ଦେବାଉ ପଡ଼େ । ମୋର ମନେଅଛି, ମୋ ବାପାଙ୍କର ପେନ୍ସନ୍ କାଗଜ ପାଇଁ ମୁଁ କମିଶନ୍ ଦେବାକୁ ମନା କରିଥିଲି ବୋଲି ତାହା ତିନିବର୍ଷ ପରେ ମିଳିଥିଲା । ଏହା ହେଉଛି, "ମୋର ଭାରତ ମହାନ୍"ର ଅନ୍ତଃକଥା ।

ରୁମ୍ର ଲେଖାଯୋଖା ସାରି ହାଉସ୍ କିପିଙ୍ଗ୍ ଷ୍ଟାଫଙ୍କ ସହ ମୋ ରୁମ୍କୁ ଗଲି । ରୁମ୍ଟି ବହୁତ୍ ସୁନ୍ଦର ଥିଲା । ସାଜସଜ୍ଜାରେ ଆଭିଜାତ୍ୟର ଝଲକ । ମନେ ହେଉଥିଲା ଏକ ବିଳାସମୟ ରାଜକୁମାରଙ୍କ ଅନ୍ତଃକକ୍ଷ ଭଳି । ମୋତେ ସେହି ଆଟେଣ୍ଡାଣ୍ଟ୍ ଜଣକ ସବ୍ କଥା ବୁଝାଇ ସାରିବା ପରେ କବାଟ ନିକଟରେ ଠିଆ ହୋଇ ଦୁଇ ହାତକୁ ମନ୍ଥିବାରେ ଲାଗିଲା । ମୁଁ ପଚାରିଲି ହିନ୍ଦୀରେ କଣ ସମସ୍ୟା ଅଛି କି ଭାଇ ?

ସେ ମୁରୁକି ହସା ଦେଇ ଭଙ୍ଗା ହିନ୍ଦୀ ରେ କହିଲା, "ସାର୍, ବକ୍ସିସ୍" ପ୍ରଥମେ ମୁଁ କିଛି ବୁଝିପାରୁନଥିଲି । କିନ୍ତୁ ପୁଣିଥରେ ତାକୁ ପଚାରନ୍ତେ ସେ କହିଲା, "ସାର୍, ସମସ୍ତେ ଏପରି ଦିଅନ୍ତି, ଏଣୁ ଅଭ୍ୟାସଟିଏ ପଡ଼ିଯାଇଛି । କିଛି ଜବରଦସ୍ତି ନାହିଁ । ଯଦି ଆପଣ ଖୁସି ତାହା ହେଲେ ଦିଅନ୍ତୁ, ନ ହେଲେ ଥାଉ ।"

ମୋ ଭିତରର ନୂଆଁ ବାବୁଟି ମୋତେ ବାଧ୍ୟ କଲା ତା ହାତରେ ୧୦ ଟଙ୍କା ବକ୍ସିସ୍ ଦେବାକୁ । ମୁଁ ପଇସା ଦେଇସାରି ଆଶ୍ୱସ୍ତ ହେଲି । ତାହା କମିଶନ୍ କୁ ହେଲା ନା ମୋ ନବାବ୍ ପଣିଆକୁ ଗଲା ଜାଣିପାରିଲି ନାହିଁ ।

କୋଠରୀଟିର ମୁଁ ଥିଲ ଏକାଗ୍ର ଚକ୍ରବର୍ତ୍ତୀ ଏଣୁ ମୋ ଭିତରର ଯୁବସୁଲଭ ଚପଳାମୀ ସବୁ ଧିରେ ଧିରେ ଆରମ୍ଭ ହେଲା । ଫୋନ୍ କରି ଚାଓମିନ୍, ଚିଲି ଚିକେନ୍ ଓ ଅଣ୍ଡା ଓମ୍ଲେଟ୍ ମଗାଇଲି । ଓଡ଼ିଆ ପିଲା । ଖାଇବାରେ ଆଉ ସଲାସୁତୁରା କଲେ କଣ ହେବ ?

ବାଥ୍ ଟବରେ ବି ପ୍ରଥମ ଥର ପାଇଁ ଶୋଇ, ସୁବାସିତ ସାବୁନ୍ ଫେଣରେ ଗରମ ପାଣି ସହ ବୁଡ଼ିରହିଲି । ହେଲେ ଗାଁ ପୋଖରୀର ପହଁରା ଆଉ ନଦୀ ପାଣିର ଶାନ୍ତି ସେଥିରେ ମିଳିଲା ନାହିଁ ।

ବାଡ଼ି ବାଇଗଣ ଆଉ ପୋଥି ବାଇଗଣର ଫରକ୍ ଠିକ୍ ବୁଝିପାରୁଥିଲି । ଯେଉଁ ଲୋକ ଖାଇବା ପାଇଁ ଆଣିଲା, ତାର ମନ ବୁଝି ୧୦ ଟି ଟଙ୍କା ବଢ଼ାଇଦେଲି । ସିଏ ବି ଖୁସ୍, ମୁଁ ବି ଖୁସ୍ । ଏହାତ ନବାବ୍ ପଣିଆ, ନୁହେଁ ତ ଆଉ କଣ ?

ରାତିରେ ଏତେ ଦୂର ସହରରେ ଶୋଇଲା ବେଳେ କେବଳ ଜହ୍ନ ଓ ତାରା ହିଁ ମୋତେ ଅପରିବର୍ତ୍ତିତ ଲାଗୁଥିଲେ ହେଲେ ଆଉ ସବୁ ଖାପଛଡ଼ା ଲାଗୁଥିଲା । ଟିଭି ଦେଖୁ ଦେଖୁ ଶୋଇଲାବେଳକୁ ରାତି ଦୁଇଟା ହୋଇ ସାରିଥିଲା ।

ସକାଳୁ ଉଠି ନିତ୍ୟକର୍ମସାରି ଜଳଖିଆ ମଗାଇଲି । ଯେଉଁ ବ୍ୟକ୍ତି ଜଣକ ଜଳଖିଆ ନେଇ ଆସିଲେ ତାଙ୍କୁ ସହରର ସବୁ ଦେଖିବା ଜାଗା ଉପରେ କଥାବାର୍ତ୍ତା ହେଲି । ସେମାନେ ଓଡ଼ିଆ ଜାଣନ୍ତିନି, ମୁଁ ତେଲୁଗୁ ବୁଝେନାହିଁ । ଏଣୁ କାଲଜଡ଼ା ଭଳି ଅଧା ହିନ୍ଦୀ ଅଧା ଠାରରେ କଥା ହେବାଟା ଅଜବ ବୋଧ ହୋଉଥିଲା । ଯାହା ହେଉ କଥାବାର୍ତ୍ତାରେ ଜାଣିପାରିଲି ଜଗଦମ୍ବା ଜଙ୍କସନ୍, ସମୁଦ୍ରକୂଳ ଓ କୈଳାଶଗିରି ସବୁ ଦେଖିବାଭଳି ଜାଗା । ସେ ବହୁତ୍ ଆଗ୍ରହର ସହ କହିବାରେ ଲାଗିଲା, "ଆପଣ କୁଆଡ଼େ ଯା'ନ୍ତୁ ବା ନଯା'ନ୍ତୁ ହେଲେ 'ସମ୍ପତ୍ ବିନାୟକ ମନ୍ଦିର' ନିଷ୍ଚୟ ଯିବେ । ବଡ଼ ପ୍ରତ୍ୟକ୍ଷ ଦେବତା ।" ତା କଥାରେ ହଁ ଭରିଲି ।

କଥାରେ ଅଛି, 'If you are in ROME, think like ROMANS', ତଳକୁ ଆସି ରିସେପ୍‌ସନିଷ୍ଟଙ୍କୁ ଅନୁରୋଧ କରିବାରେ ସେ ଏକ ଭଲ ଅଟୋବାଲା ଯୋଗାଡ଼ କରିଦେଲେ ସହର ବୁଲାଇବା ପାଇଁ । ସେଇଠୁ ମୁଁ, ମୋତେ ସାଙ୍ଗରେ ନେଇ ବିଶାଖାପାଟଣା ସହର ବୁଲିବାକୁ ବାହାରିଲି । ମୋର ବୁଝିଥିବା ଜାଗା ତାକୁ ବୁଝାଇଦେଲି ଏବଂ ପ୍ରଥମେ ସମ୍ପତ୍ ବିନାୟକ ମନ୍ଦିରକୁ ଯିବାକୁ ନିଷ୍ଚୟ ହେଲା । ୧୦ ମିନିଟ୍ ପରେ ମନ୍ଦିର ନିକଟରେ ଆମେ ପହଞ୍ଚିଗଲୁ ।

ସମ୍ପତ୍ ବିନାୟକ ମନ୍ଦିର : ୧୯୬୧ରେ ନିର୍ମିତ ହୋଇଥିବା ଏହି ମନ୍ଦିରଟି ବହୁତ ଛୋଟ୍ ଅଟେ । ସହରର ଜଣାଶୁଣା ଅସିଲମେଟା ଅଞ୍ଚଳରେ ଏହି ଛୋଟ ମନ୍ଦିରଟିକୁ ଦର୍ଶନାର୍ଥୀ ମାନଙ୍କର ଭିଡ଼ ଅହରହ ଲାଗି ରହିଥାଏ । ମନ୍ଦିର ନିକଟକୁ ଯାଇ ଦେଖିଲି ମନୁଷ୍ୟ

ମାନଙ୍କର ପ୍ରଗାଢ଼ ବିଶ୍ୱାସ ଓ ଭକ୍ତି । ସେଦିନ ବୋଧହୁଏ କୌଣସି ଏକ ପରୀକ୍ଷା ଥିଲା ଏଣୁ ଶହ ଶହ ଛାତ୍ର ନିଜ ନିଜର ଆଡ଼ମିଟ୍ କାର୍ଡ଼ ସବୁ ପୂଜା କରାଉଥିଲେ । କେଉଁ ଭକ୍ତ ନିଜର ଜନ୍ମିତ ୨ ଦିନର ପିଲାକୁ ମନ୍ଦିର ପ୍ରାଙ୍ଗଣରେ ଗଡ଼ାଉଥିଲେ । ପଚାରି ବୁଝିଲି । ଏହି ମନ୍ଦିର ଉପରେ ସହର ବାସୀଙ୍କର ଅଖଣ୍ଡ ବିଶ୍ୱାସ । ଏହି ମନ୍ଦିରକୁ ସହରର ରକ୍ଷାକର୍ତ୍ତା ବୋଲି ଅଟୋବାଲା ମୋତେ ରାସ୍ତାରେ ବୁଝାଇ ଚାଲିଥିଲା ।

ତା'ପରେ ସହରର ବିଭିନ୍ନ ମୁଖ୍ୟ ସଡ଼କ ବଜାର ବୁଲିବାରେ ଲାଗିଲି । 'ଗୋଥିସନ୍' ଷ୍ଟିଲ୍ ଦୋକାଣରୁ କିଛି କିଣିଲି । ତା'ପରେ ତାକୁ ପଚାରିଲି ଭଲ ଖାଇବା ହୋଟେଲ୍ ବିଷୟରେ ମଧ୍ୟାହ୍ନ ଭୋଜନ ପାଇଁ । ସେ ମୋତେ ଦଶପଲ୍ଲା ହୋଟେଲ୍, ଡ଼ଲ୍ଫିନ୍ ହୋଟେଲ୍ ଓ ଗ୍ରୀନ୍‌ପାର୍କ ହୋଟେଲ୍ ବିଷୟରେ ବୁଝାଇ ମିଲ୍ସ୍ ବିଷୟରେ କହୁଥିଲା । ମୁଁ ଯେତେବେଳେ ତାକୁ ବେଶିଭଲ ହୋଟେଲ୍ ବିଷୟରେ ପଚାରିଲି ସେ କହିଥିଲା ଯେ ଦଶପଲ୍ଲା ହୋଟେଲ୍‌ର ଏକ ଶାଖା TYCOON ନାମରେ ଅପ୍‌ଲ୍ୟାଣ୍ଡ ଅଞ୍ଚଳରେ ଅଛି ଏବଂ ସବୁ ସମ୍ଭ୍ରାନ୍ତ ଶ୍ରେଣୀର ଲୋକେ ସେଠାକୁ ଯାଆନ୍ତି ।

ମନରେ ଆଗ୍ରହ ଓ ପେଟରେ ଭୋକ ନେଇ ସେହି ହୋଟେଲକୁ ତାକୁ ମୋତେ ନେବାପାଇଁ କହିଲି ।

## ଟାଇକୁନ୍ ହୋଟେଲ୍ :

ଏହି ହୋଟେଲ୍ ଶୀରିପୁରମ୍ ରେ ଅଛି । ଭଲ ହୋଟେଲ୍ ଟିଏ । ମୋ ସାଙ୍ଗରେ ଖାଇବା ପାଇଁ ଅଟୋବାଲାକୁ ଡ଼ାକିବାରୁ ସେ କହିଲା ଯେ ତା'ର ସେଦିନ ଉପବାସ । ମୁଁ ସେହି ହୋଟେଲ୍‌ରେ ବିରିୟାନୀ, ମଟନ ଝୋଳ ଓ ଅଙ୍ଗୁର ରସ ଖାଇଥିଲି । ସେଭଳି ଅଙ୍ଗୁର ରସ ଆଜିଯାଏଁ କେଉଁଠାରେ ପିଇନି । ସେଠାରୁ ଫେରି ରାମକୃଷ୍ଣ ବିଚ୍ (ସମୁଦ୍ର କୂଳ) କୁ ଗଲି ।

ବହୁତ ସୁନ୍ଦର ସଳଖ କଳା ମଚ ମଚ ରାସ୍ତାର ଗୋଟିଏ ପାଖରେ ସମୁଦ୍ର ତା'ର ଅଳସ ଭାଙ୍ଗୁଥିଲା କୂଳରେ । ସମୁଦ୍ରର ବିପରୀତ ଦିଗରେ ରୋଡ଼ର ଅନ୍ୟ ପାର୍ଶ୍ୱରେ ଭଳିକିଭଳି ପଥର ମୂର୍ତ୍ତିସବୁ ସଜା ହୋଇ ରହିଥାଏ । ବହୁତ୍ ସୁନ୍ଦର ପରିବେଶ ଟିଏ ।

ସେଠାରୁ ମୁଁ ପ୍ରସିଦ୍ଧ କୈଳାଶଗିରିକୁ ଗଲି । ସମୁଦ୍ର ନିକଟରେ ଗୋଟିଏ ପାହାଡ଼ ଉପରେ ସୁନ୍ଦର୍ ଶିବ ପାର୍ବତୀଙ୍କର ମୂର୍ତ୍ତୀ ଶୋଭା ପାଉଥିଲା । ତାହାର ଚତୁର୍ଦ୍ଦିଗରେ ଥିଲା ସୁନ୍ଦର ଘାସ ଗାଲିଚା ଓ ଭଳିକିଭଳି ଜୀବମୂର୍ତ୍ତି ସବୁ । କୈଳାଶଗିରି ଉପରୁ ସହରର ଦୃଶ୍ୟ ଏବଂ ସମୁଦ୍ର ଅତୀବ ମନୋରମ ଦିଶୁଥିଲା । ଧିରେ ଧିରେ ସନ୍ଧ୍ୟା ନଇଁ ଆସୁଥାଏ । ଅବଶ ଦେହଟାକୁ ଆଉ ଅତ୍ୟାଚାର ନ କରି ଅଟୋବାଲା ସାଙ୍ଗରେ ଫେରି ଆସୁଥିଲି ଲଜିଙ୍ଗ୍‌କୁ । ଅଟୋବାଲା ପଚାରିଲା ବାବୁ ସହର ଭଲ ଲାଗିଲା । ତା କଥାରେ ହଁ ଭରିଲି । ଭଲ ତ ଲାଗିଲା...

କନ୍ୟା ଭ୍ରୂଣ ହତ୍ୟା ମାମଲା ଦିନକୁ ଦିନ ଓଡ଼ିଶାରେ ବୃଦ୍ଧିପାଇବାକୁ ଲାଗିଛି । ନିତିଦିନ ସମ୍ବାଦପତ୍ରରେ ଏହିପରି ଅନେକ ସମ୍ବାଦ ପଢ଼ିବାକୁ ମିଳୁଛି । ଏହା ପାଇଁ ଆମ ବିଜ୍ଞ ପାଠକ ପାଠିକାମାନେ କଣ କହୁଛନ୍ତି ତାହା ନିମ୍ନରେ ଦିଆଯାଇଛି ।

## ହେମଲତା ସାହୁ

ମଣିଷର ବିଚାରଧାରା ଉପରେ ନିର୍ଭର କରେ ପୁଅ ଆଉ ଝିଅର ଫରକ୍ । ଟିଭି ହେଉ କି ସମ୍ବାଦପତ୍ର ହେଉ, ଯେଉଁମାନେ ମଞ୍ଚ ଉପରେ ଆସି ବଡ଼ ବଡ଼ ଚର୍ଚ୍ଚା ଭାଗ ନେଉଛନ୍ତି,ପ୍ରଥମେ ସେମାନଙ୍କୁ ପ୍ରଶ୍ନ କରନ୍ତୁ ସେମାନେ ପୁଅ ପାଇଁ ଆଶାୟୀ ନା ନୁହେଁ ? କେବଳ ସେହି ପିତାମାତା ମାନେ ଗର୍ବିତ ହୁଅନ୍ତି, ଯେଉଁମାନଙ୍କ ର କୋମଳ ହୃଦୟ ଟିଏ ଅଛି, ସେ କେବେ ପୁଅ ଝିଅ ର ଫରକ୍ ଦେଖନ୍ତି ନାହିଁ ।

-----------------------------------------------

## ଆଶିଷ କୁମାର ପଣ୍ଡା

କଣ ଟିକେ ସ୍ନେହ ଶ୍ରଦ୍ଧା ନାହିଁ ମୋ ପାଇଁ
କି ତିଳେ ମାତ୍ର ମମତା ନାହିଁ
ମୁଁ କଣ ଆସୁଛି ଏଇ ଧରାକୁ
ତୁମ ଇଚ୍ଛାରେ ନା ଅନିଚ୍ଛାରେ !!!

ମୋତେ ଫିଙ୍ଗିଦେବା ବେଳେ
ଥରେ ତ ଅନୁଭବ କର ମୋ ହୃଦୟ ସ୍ପନ୍ଦନ
ଆଉ ବୁଝ ମୋ କୁନି ଓଠର ଭାଷା
କେମିତି ସିଏ ବ୍ୟାକୁଳ ଏଇ ଦୁନିଆକୁ
ଜାଣିବା ଆଉ ଚିହ୍ନିବା ପାଇଁ
ଦେଇ ପାରିବିନି ମୁଁ ମୁଖାଗ୍ନି ବୋଲି
କଣ ଏତେ ମୂଲ୍ୟହୀନ ଯେ ନିଜକୁ ଆବିଷ୍କାର କରୁଛି
କଳା ପଲିଥିନ୍ ରେ
କୋଉ ଡ୍ରେନ୍ ରେ
କିମ୍ବା କାଗଜ ଡ଼ବାରେ

ଦୟାକରି ମୋତେ ବି ବଞ୍ଚିବାର ସୁଯୋଗ ଦିଅ

ସ୍ୱପ୍ନ ଦେଖିବାଉ ଦିଅ,

ହେ ସମାଜର ବଡ଼ପଣ୍ଡା ମାନେ... !!!

---------------------------------------------------

## କୃଷ୍ଣ ସାହୁ

ଭବିଷ୍ୟତରେ ସରକାର ସମଲିଙ୍ଗୀ ବିବାହକୁ  ସାମାଜିକ ସ୍ୱୀକୃତି ଦେବାଉ ବାଧ୍ୟ ହେବେ, ଯଦି ଏବେ କନ୍ୟାଭ୍ରୂଣ ହତ୍ୟା ରୋକାନଯାଏ ।

------------------------------------------------------

## ଊର୍ମିଳା ମିଶ୍ର

ଲୋକମାନେ ସୃଷ୍ଟିକୁ ଧ୍ୱଂସ କରିବାରେ ଲାଗି ପଡ଼ିଛନ୍ତି, ଏମିତି ତ ପୁଅଙ୍କଠାରୁ ଝିଅଙ୍କ ସଂଖ୍ୟା କମ ଅଛି... ଧିରେ ଧିରେ ଝିଅ କମିଗଲେ ପୁଅମାନେ କାହାକୁ ବାହା ହେବେ ଯେ ସୃଷ୍ଟି ରହିବ ?

----------------------------------------

## ରବୀନ୍ଦ୍ର  କୁମାର ଦାଶ

ଏଇମିତି ଯଦି କନ୍ୟା ଭ୍ରୂଣ ହତ୍ୟା ହେବ ଦିନେ ଏ ପୃଥିବୀ କନ୍ୟା ଶୂନ୍ୟ ହୋଇଯିବ, କେବଳ ପ୍ରଳୟ ବାକି ରହିଯିବ ।

--------------------------------------------

## ଏସ୍ କମିଲୁଦ୍ଦିନ ଅହମଦ୍

ଯଦି ଏମିତି ହୁଏ, ତେବେ ଆଗାମୀ କିଛି ବର୍ଷ ପରେ ପୁଅ ଘରବାଲା ଝିଅ ଘରବାଲାଙ୍କୁ ବାହାଘର ବେଳେ ଯୌତୁକ ବାବଦରେ ଟଙ୍କା ଦେବାକୁ ବାଧ୍ୟହେବେ। ତାଙ୍କର ଡ଼ିମାଣ୍ଡ ଏତେ ହେବ ଯେ ପୁଅ ଘରବାଲା ବ୍ୟାଙ୍କ ଫାଇନାନ୍ସ କରି ଝିଅ ଘରକୁ ଯୌତୁକ ଦେବାକୁ ବାଧ୍ୟ ହେବେ। ଏହିପରି କିଛି ବର୍ଷ ପରେ ପୁଅ ଘରବାଲା ବ୍ୟାଙ୍କ ଲୋନ୍ ସୁଝିବେ ନାହିଁ ଓ ବ୍ୟାଙ୍କବାଲା କନିଆଁ ମାନଙ୍କୁ ବନ୍ଦୀକରି ବ୍ୟାଙ୍କ ବାରଣ୍ଡାରେ ବସେଇ ଦେବେ, ଇସ୍ ତା ପରେ କଣ ଯେ ହେବ, ହେ ଭଗବାନ ଝିଅ ମାନଙ୍କୁ ସୁରକ୍ଷା

ଦିଅନ୍ତୁ, ହେ ସରକାର ଝିଅର ବାପା ମା ମାନଙ୍କୁ ଏପରି ଅପରାଧ ପାଇଁ ଦଣ୍ଡ ଦିଅନ୍ତୁ, ନଚେତ୍ ଆଗକୁ କିଛି ନା କହିବା ଭଲ ॥

-----------------------------------------

## ପ୍ରଶାନ୍ତ କୁମାର ଭୂୟାଁ

ଭୂଣ ହତ୍ୟା .... ସମାଜ ର ଏକ ଭ୍ରଷ୍ଟ ତଥା କଳଙ୍କପୂର୍ଣ୍ଣ ଗୋଷ୍ଠୀ ର ଏକ ପ୍ରହସନ । ଶାରୀରିକ ସମ୍ଭୋଗ ରୁ ହେଉ ବା...ଅର୍ଥନୈତିକ ତାଡନା ରୁ ହେଉ... ଅବୈଧ ଗର୍ଭ ହେଉ ବା ଲିଂଗ ନିରୁପଣ ରୁ ହେଉ... ଭୂଣ ସେମାନଂକ ପାଇଁ ଏକ ବୋଝ ହୋଇଯାଏ । ଏଣୁ ସେମାନେ ବାଧ୍ୟ ହୁଅନ୍ତି ଭୂଣ ହତ୍ୟା ନିମନ୍ତେ ।

ଭୂଣ ହତ୍ୟା ଏକ ସାଧାରଣ କଥା ମଧ୍ୟ ନୁହେଁ... ଏଥିପାଇଁ ସାଂଗସାଥୀ ର ପରାମର୍ଶ , ଗୁପ୍ତ ମନ୍ତ୍ରଣା , ଲୁଚା ଚୋରା ରେ ଡାକ୍ତର ନର୍ସ୍ ଓ ଧାଇ ମା ମାନଂକ ନିକଟକୁ ଧାଇଁବାକୁ ପଡିଥାଏ ।

ଭୂଣହତ୍ୟା କୁ ବନ୍ଦ କରିବାକୁ ହେଲେ ... ସମାଚାର ପତ୍ର ହେଉ ... ଟି ଭି ଚାନେଲ୍ ହେଉ... ସ୍ୱେଚ୍ଛାସେବୀ ଅନୁଷ୍ଠାନ ହେଉ ବା ସମାଜ ର ପ୍ରତ୍ୟେକ ବର୍ଗ ର ବ୍ୟକ୍ତି ବିଶେଷ ଏହା ପାଇଁ ପ୍ରାଥମିକ ଏବଂ ଜରୁରୀକାଳିନ ଭିତ୍ତି ରେ ବିରୁଦ୍ଧାଚରଣ କରିବାକୁ ହେବ ।

ନାରୀ ମାନଙ୍କର ସମ୍ମାନ , ଯୁବତୀ ମାନଙ୍କର ସୁରକ୍ଷା , ବାଳିକା ମାନଙ୍କୁ ଆଦର ଏବଂ ଶିଶୁ କନ୍ୟା ମାନଙ୍କୁ ସ୍ନେହ ଓ ଯତ୍ନ କରିବା ପାଇଁ ଯଥେଷ୍ଟ ପ୍ରୋତ୍ସାହନ ଦେବାକୁ ହେବ ।

ଭୂଣ ହତ୍ୟା ପାଇଁ ମଂଗଳ ଗ୍ରହ ରୁ ଜୀବ ମାନେ ଆସନ୍ତି ନାହିଁ କିମ୍ବା ଏହା କୌଣସି ଆତଂକବାଦୀ ସଂଗଠନ ର ଚକ୍ରାନ୍ତ ନୁହଁ । ଏହା ପିତା ଏବଂ ମାତାଙ୍କର ଏକ ସୁଚିନ୍ତିତ / ପରିକଳ୍ପିତ ନିଷ୍ଠୁର ପଦକ୍ଷେପ ।

ଏଥିରୁ ଦୁରେଇ ରୁହନ୍ତୁ...ଏବଂ ପ୍ରତ୍ୟେକ ଶିଶୁ କୁ ତାର ବଞ୍ଚିବାର ଅଧିକାର ଦିଅନ୍ତୁ......

-------------------------------------------------

ବିଘ୍ନେଶ୍ୱର ସାହୁ

ଅତି ଦୁଃଖର କଥା । କନ୍ୟା ଭ୍ରୂଣ ହତ୍ୟା ରେ ଆଉ କିଛି ଦିନପରେ ଓଡ଼ିଶା ପ୍ରଥମ ସ୍ଥାନ ଗ୍ରହଣ କରିବ, ଏଥିରେ ଦୋରାୟ ନାହିଁ ।

---

# ଦିନେ ସ୍ୱପ୍ନରେ...

ସ୍ୱପ୍ନଲତା ମିଶ୍ର(ରଥ), ମାକୋମ୍ବ, ମିଚିଗାନ୍

ଆତ୍ମାଟିଏ ଅଳିକଲା

"ରହିବି ମୁଁ ଅଶରୀରୀ ପ୍ରଭୁ,

ନେବି ମୁଁ ଝିଅ ଜନ୍ମ,

ଝିଅଟିଏ ଜନ୍ମହେଲେ

ଚାରିପଟ ନାକସବୁ

ଆପେ ଆପେ ଟେକି ହୋଇଯାଏ ।"

ପ୍ରଶ୍ନଭରା ଈଶ୍ୱରଙ୍କୁ ଚାହିଁ

ଆତ୍ମା ଧିରେ କହେ

"ଆଜ୍ଞା କର,

କଢ଼ୀଟିଏ ହେବି

ଫୁଲହୋଇ ସକାଳେ ଫୁଟିବି

ଚଉଦିଗ ମହକେଇ ସଂଜରେ ଝରିବି,

ଝିଅହୋଇ ଜନ୍ମନେଲେ

ବଞ୍ଚିବାକୁ ହେବ କିନ୍ତୁ

ପ୍ରତିକ୍ଷଣେ ମଉଳି ମଉଳି"। (୧)

ଉତ୍ତରିଲେ ଈଶ୍ୱର ମଧୁର କଣ୍ଠରେ

"ଆମ୍ଳାନ ଫୁଲଟିଏ ଖଞ୍ଜିଥାଏ

ଝିଅର ଓଠରେ




ଫୁଲମତ୍ତୀ, ଇଛାବତୀ
ଇଛାକଲେ ଚଉଦିଗ ଚହଟିବ
ତା' ରଙ୍ଗ ତା' ମହକରେ ।"
"ନା, ନା" ଆତ୍ମା କହେ
ହେବି ପଛେ ମାଟିର ପିତୁଳା
ହେବି ମୁଁ ଇଛାବତୀ ,
ଇଛାବତୀ ହସୁଥାଏ ବଞ୍ଚୁଥାଏ
ଚାପିଦେଇ ନିଜ ଇଛା
ନିୟମର ଘୋଡଣୀ ଭିତରେ ।
ପିତୁଳାଟେ ଭାଙ୍ଗିଯାଏ
ହଜିଯାଏ ଶିଶୁର ମନରୁ ,
ଭାଙ୍ଗିଗଲାପରେ ବି ତ
ଇଛାବତୀ ସିଝୁଥାଏ.....
ଅନ୍ୟକା' କାମନାର ଉତ୍ତପ୍ତ ବାମ୍ପରେ
।(୨)
ପ୍ରଶ୍ନବାଣ ଈଶ୍ୱରଙ୍କ ଗମ୍ଭୀର କଣ୍ଠରେ
" ମାଟିର ପିତୁଳା କେବେ
ଢାଳିପାରେ ମମତାର ଧାରା,
କରିପାରେ ଅନ୍ୟାୟର ପ୍ରତିରୋଧ
କେବେ?
ପ୍ରୀତିମୟୀ, ଶକ୍ତିମୟୀ ନାରୀ
ଦୁହିତା ସେ,
ପରକୁ ଆପଣା କରେ ବଧୂଟିଏ ସାଜି ।"
ସ୍ମିତହସି ଆତ୍ମା କହେ,
" ବଧୂବେଶେ ସାଜିପାରେ
ଝିଅଟିକି ଏତେ ସହଜରେ,
ବା କିଛି ସର୍ତ୍ତରେ?
ଜନକତ ଚାହିଁଥାଏ
କନ୍ୟାକେବେ ବଧୂ ହେବ
ଦୁହିତା ଶବ୍ଦର ଅର୍ଥ ସାର୍ଥକ କରିବ,
ବାରଂବାର ଜନନୀବି ବାଞ୍ଛୁଥାଏ
ନିଜ ମନଗଣ୍ଠି
ଦେବାପାଇଁ ପଡୋଶୀଙ୍କ
ଅସରନ୍ତି ପ୍ରଶ୍ନର ଉତ୍ତର ...!
ବିବାହର ପଣ୍ୟ ବଜାରରେ
ନାରୀତ୍ୱ ତଉଲାଯାଏ
କେବେ ରୂପ, କେବେ ରଙ୍ଗ,
କେବେ ପୁଣି ଯୌତୁକ ଭିତ୍ତିରେ ।" (୩)
ଈଶ୍ୱରଙ୍କ ନୟନରେ କ୍ରୋଧର ପ୍ରାବଲ୍ୟ!
"ବୁଝିଯେ ବଧୂମୂଲ୍ୟ, ବୁଝିବକି
ନାରୀମୂଲ୍ୟ
ବଧୂ ସିଏ ପ୍ରୀତିର ପ୍ରତୀକ
ସିଞ୍ଚେଯିଏ ଅମୃତର ରସ,
ସିଏ ମୋ ଲେଖନୀ,
ଲେଖିବାକୁ ମନୁଷ୍ୟର ଭବିଷ୍ୟ କାହାଣୀ ।
ନାରୀ ମୂଲ୍ୟ ବଢେନି କମେନି
ରୂପ, ରଙ୍ଗ ଯୌତୁକ ଭିତ୍ତିରେ
ନାରୀମୂଲ୍ୟ କିଛିହେଁ .....
ନାରୀତ୍ୱର ଅଭାବ ବୋଧରେ ।
ପ୍ରୀତିର ପରଶଦେଇ

ପ୍ରେମମୟୀ କଲ୍ୟାଣୀ ସେ

ସାଉଁଟିଏ ବୀଜଟିଏ,

ମାଟି ପାଣି ପବନ ଓ ଆଲୁଅର

ସମ୍ଭାର ଯୋଗାଏ,

ବୀଜଟିକୁ ଦ୍ରୁମଟିରେ

ରୂପାନ୍ତର କରେ,

ନାରୀ ସେ ଯେ ଭଗବତୀ, ଦ୍ୱିତୀୟ ଈଶ୍ୱର ।

(୪)

ବିମ୍ର କଣ୍ଠରେ ଆତ୍ମା ଧିରେ କହେ

"ଉତ୍ତରିଲେ ଶେଷ ପ୍ରଶ୍ନ ମୋର

ସତ୍ୟ ମୁଁ ରଖିଲି ପ୍ରଭୁ

ଝିଅ ହୋଇ ଜନ୍ମହେବି

ଅକୁଣ୍ଠ ଚିତ୍ତରେ!

ଆଲୋକ ମୁଁ କେମିତି ଦେଖିବି?

କେମିତିବା ଅଂଜଳୀରେ

ପ୍ରିତୀର ପାଖୁଡା ଭରି

ଚଉଦିଗ ମହକେଇ ଦେବି ?"

ତୁମ ଆଶୀର୍ବାଦ ନେଇ

ଭୃଣହୋଇ ରହିବି ମୁଁ ଜନନୀ ଗର୍ଭରେ

କିନ୍ତୁ ପରୀକ୍ଷା ନିରୀକ୍ଷା କରି

ଝିଅବୋଲି ଜାଣିଗଲେ ...

ଜନନୀକି ରହିବାକୁ ଦେବ ମୋତେ ତା' ଉଦର

ଭିତରେ?"

ଆତ୍ମାର ଏ ଶେଷ ପ୍ରଶ୍ନ.. ପ୍ରଶ୍ନ ଟିଏ ହୋଇ

ରହିଗଲା

ନିରୁତ୍ତର ଈଶ୍ୱର ଯେଣୁ ଉତ୍ତରର ସନ୍ଧାନେ

ରହିଲେ (୫)

..............................................................................

ସପନ ହୋଇଲା ଶେଷ,

ମନରେ ମୋ ଅବଶୋଷ

ଈଶ୍ୱର ବି ନିରୁତ୍ତର,

ତେବେ....

କିଏ ସେ ପାରିବ ଚିହ୍ନି

ନାରୀ ମନ ଓ

କିଏ ସେ ପାରିବ ବୁଝି

ଆତ୍ମାର ଏ ଶେଷ ପ୍ରଶ୍ନ..!

(ସ୍ୱାମୀ ନିର୍ମଳ ରଥ ଓ ଦୁଇ ଝିଅ ଆନ୍ୟା, ନୟନାଙ୍କ ସହିତ ମୁଁ ମିଚିଗାନ୍‌ରେ ବାସ କରେ । କବିତାଟି ପ୍ରାୟ କୋଡିଏ ବର୍ଷ ତଳେ ଲେଖା ହୋଇଥିଲେବି ସମାଜ ଆଜିବି ଏ ପ୍ରଶ୍ନର ଉତ୍ତର ଖୋଜୁଛି । ନିକଟ ଅତୀତରେ କନ୍ୟାଭୃଣ ହତ୍ୟାକୁ ନେଇ ପ୍ରକାଶ ପାଇଥିବା କିଛି ସଂବାଦ ପୁନଶ୍ଚ ମନରେ ଆଲୋଡନ ସୃଷ୍ଟି କରିଛି, ମୋ ନାରୀ ହୃଦୟ ଏବଂ ମୋ କବି ପ୍ରାଣ- ମନରେ ପ୍ରଶ୍ନ ଉଠୁଛି କଣ ଏହାର ସମାଧାନ? )



# ପୁରୁଷ ଯଦି ସ୍ତ୍ରୀ ହୁଅନ୍ତେ !

ପ୍ରଶାନ୍ତ କୁମାର ଭୂୟାଁ

ମଣିଷର ମନଟା ଗୋଟିଏ କାଉଁରୀ ଦେଶଭଳି । ଅଜବ ଯେତିକି, ଅମାନିଆ ଆହୁରି ଅଧିକ । ଭାବିବା କଥାକୁ ସମୟ / ସୁଯୋଗ ନଥାଉ ପଛକେ, ନଭାବିବା କଥାକୁ ବେଶ୍ ଭାଇବା ବହୁତ ଭଲଲାଗେ ।

ଆଜି ଯେତେବେଳେ ଜ୍ୟୋତିବାବୁ ଚେଙ୍ଗଟା ଲଗାଇ ଦେଇଛନ୍ତି, ମନେ ପଡ଼ିଗଲା କଲେଜ ପଢ଼ିବା ବେଳର ଏହି ବ୍ୟଙ୍ଗ ପ୍ରସଙ୍ଗଟା ।

କଥାଟିର ପୃଷ୍ଠଭୂମି କେଉଁ ଏକ ସଭ୍ୟ, ବିକାଶଶୀଳ ଓ ପାଶ୍ଚାତ୍ୟ ଦେଶର । ଧନରେ ଅଗ୍ରଣୀ, ବିଜ୍ଞାନରେ ଅଗ୍ରଗାମୀ ଆଉ ସମସ୍ତ ସୁବିଧା ସୁଯୋଗର କମ୍ବଳ ଓଢ଼େଇ ରହିଥିବା ଏହି ପାଶ୍ଚାତ୍ୟ ଦେଶରେ ମୁଣ୍ଡଟେକି ଉଠିଲା, ଆଧୁନିକ ମହିଳା ସମାଜରେ ଏକ ଯୁଗୋପଯୋଗୀ ପ୍ରଶ୍ନ ?

ପୁରୁଷ ଯଦି ସ୍ତ୍ରୀ ହୁଅନ୍ତେ ???

କବାଟଟିକୁ ଜେନିମେରୀ ଖୋଲିଛନ୍ତି କି ନାହିଁ, ପ୍ୟାରିସ୍ ଅତରରେ ସୁବାସିତ ହୋଇ ରହିଥିବା ଓ ମୁହଁରେ 'ଓଃ ସିଟ୍ !' କୁ ଜପାମାଳ କରିଥିବା ମ୍ୟାଡ଼ାମ୍ ଫ୍ରିଡ଼ା ପଶିଆସିଲେ କୋଠରୀ ଭିତରକୁ ଏକ ବିରକ୍ତିକର ଭାବକୁ ନେଇ ।

ଜେନିମେରୀ ପଚାରିଲେ, କଣ ହେଲାକି ମ୍ୟାଡ଼ାମ୍ ଫ୍ରିଡ଼ା ?

ବାସ୍, ଟିମ୍ବିରି ବସାକୁ ପଥର ବାଜିଲା ପରର ଦୃଶ୍ୟଭଳି ମ୍ୟାଡ଼ାମ୍ ଫ୍ରିଡ଼ାଙ୍କର ଉତ୍ତର ସବୁ କମାଣରୁ ତୋପ ଭଳି ପୂରା କୋଠରୀ ଟାକୁ ତରଙ୍ଗାୟିତ କରିଦେଲା ।

ମ୍ୟାଡ଼ାମ୍ ଫ୍ରିଡ଼ା କହିଚାଲିଥିଲେ, ... ଏ ପୁରୁଷ ଗୁଡ଼ାକ ଭାରି ନିର୍ଲଜ ।

ବଡ଼ ବେହିଆ ଗୁଡ଼ାକ, ଓଃ ସିଟ୍ ॥

ଯେତେ ଭଲ କଲେ ବି ଅନ୍ୟ ଜାଗାରେ ମୁହଁ ମାରୁଛନ୍ତି ହୋ....

ଏଇ ଦେଖୁନ ଟିଭି ଖୋଲିଲେ ମଧ୍ୟ ସେଇ କଥା । ଓଃ ସିଟ୍...

ମୁଁ ମନାକରୁନି ଯେ ସବୁ ସ୍ୱାମୀମାନେ ଏହା କରୁନାହାନ୍ତି ବୋଲି । ସତ କହିଲ, କଣ ବା କରିବୁ ଆମେ ବି ସାରା ଦିନ ଘରେ ବସି, ଘର କାମ କରି... ଆମର ଜୀବନ କଣ ବନ୍ଦୀଶାଳା ଆଉ ତୁମର ସବୁ ନନ୍ଦନ କାନନ ଅମରାବତୀର... ଓଃ ସିଟ୍...

ମିଟିଙ୍ଗ୍ ନାଁରେ ଡେଟିଙ୍ଗ୍... ପ୍ରୋଜେକ୍ଟ ନାଁରେ ଏଫାୟର୍... ଆମ ମହିଳା ସମିତିରେ ଯାହା ମୁହଁରୁ ଶୁଣିବ ସେଇ କଥା... ଓଃ ସିଟ୍...

ନାହିଁ ମ ଜେନିମେରୀ... ଆଉ ସହି ହେଉନି... ଓଃ ସିଟ୍...

କଣ ଗୋଟେ କରିବାକୁ ପଡ଼ିବ ଆ ପାଇଁ... ପାର୍ଲ୍ୟାମେଣ୍ଟ ନୁହେଁ...

ଏ ସବୁ ଧାତାବିଧାତା, ସୃଷ୍ଟିକର୍ତ୍ତାଙ୍କ ପାଖରେ ଯାଇ ପହଞ୍ଚିବାକୁ ପଡ଼ିବ ।

ୟୁ ଏନ୍ କାଉନସେଲର୍ ହାତର କଥା ନୁହଁ ଇଏ । ଆମେ ସବୁ ଯାଇ ସ୍ୱର୍ଗ / ବୈକୁଣ୍ଠ / କୈଳାଶ ହୁଲସ୍ଥୁଲ୍ କରିବାକୁ ପଡ଼ିବ । ହେଲେ, ତୁମେ ବି ସଜାଗ ରୁହ, ମୁଁ ଏହାର ଦଫା ରଫା କରୁଛି । ଓଃ ସିଟ୍...

ଏଇତକ କହି ଲଥକରି ବସିପଡ଼ିଲେ ମାଡ଼ାମ୍ ଫ୍ରିଡ଼ା, ଦାନ୍ତକୁ ନିକୁଟି ପୁଣି କହିଲେ, ଏ ମେରୀ... ଗଲାଥର ଯେଉଁ ୱାଇନ୍ ପିଆଇଥିଲ... ଆଉ ଟିକେ ପିଆଇଲ... ଓଃ ସିଟ୍... ଅମୃତ ଟା ହେ... କେଉଁଠାରୁ ଆଣିଥିଲ ?

ଜେନିମେରୀ କହିଲେ, 'ରବର୍ଟ୍ ତାହା ୟୁରୋପ୍ ଟୁର୍‌ରେ ଗଲାବେଳେ ଆଣିଥିଲେ ।'

ପିଆଲାଟା ଧରିସାରି... ଜେନିମେରୀଙ୍କ କାନପାଖରେ କହିଲେ, ମ୍ୟାଡ଼ାମ୍ ଫ୍ରିଡ଼ା..

:ଶୁଣୁଛି, ରବର୍ଟ୍ କାଳେ ୨ ବର୍ଷରେ ୩ଟା ସେକ୍ରେଟାରୀ ଧରି ବୁଲୁଛି । ଏକକୁ ଆରେକ ବଳି । ଏବର ତାଜା ସେକ୍ରେଟାରୀ କଥା କହନି ମ... ଓଃ ସିଟ୍

ତା ଚାଲିରେ ବା ମେଦିନି କଂପୁଛି । ଟିକେ ଜାଗ୍ରତ ରହ, ଏ ସବୁରେ... ଓଃ ସିଟ୍...

ଧିରେ ଧିରେ ଜେନିମେରୀଙ୍କ ବୈଠକରେ ମହିଳା ସମିତିର ବାକି ସମସ୍ତ ସଭ୍ୟାମାନେ ରୁଣ୍ଡ ହେଲେ । ପିଆ ପିଇ ହେଲା, ଆଲୋଚନା ବିଲୋଚନା, ତର୍କ ବିତର୍କ ପରେ ଏହା ନିଶ୍ଚୟ ହେଲା ଯେ ଭଗବାନଙ୍କୁ ଚରମପତ୍ର ଦିଆଯିବ ଏହି ପୁରୁଷ ସମାଜ

ବିରୁଦ୍ଧରେ । ସବୁ ହଁ ହେଲା । ହଁ କୁ ହାଇକୋର୍ଟ୍ ସରିନୁହଁ । ଦିନକାଳ ଠିକ୍ ହେଲା, ସମସ୍ତେ ଧାର୍ଯ୍ୟ ଦିନରେ ଭଗବାନଙ୍କ ନିକଟରେ ଉପସ୍ଥିତ୍ ହେଲେ । ଗୋଟିଏ ପରେ ଗୋଟିଏ ଦଲିଲ୍ ଉପସ୍ଥିତ ହେଲା ପୁରୁଷ ମାନଙ୍କର ପରସ୍ତ୍ରୀକାତରତା, ଉଦ୍ଧାମତା, ବିଳାସପ୍ରିୟ ଓ କାମନା ବାସନାର ଇତିବୃତ୍ତି ।

ଭଗବାନ ହତଚକିତ୍ ।

ଆରେ ବାବା, ଏ କଣା ? ହଁ, ନାରୀ ସମାଜର ବିଦ୍ରୋହ ତାଙ୍କ ପାଇଁ ଚିରାଚରିତ ।

କେବେ ଯଶୋଦା, ଦେବକୀ ଦ୍ୱନ୍ଦ୍ୱ ତ, କେବେ ରାଧା ରୁକ୍ମଣୀ ସମସ୍ୟା, କେବେ ଦ୍ରୌପଦୀର ଗୁହାରୀ ତ କେବେ ତୁଳସୀର ସତୀତ୍ୱ ।

ହେଲେ ଆଜିର ଆଲୋଚନା ଅଲଗା କଥା ।

ମ୍ୟାଡ଼ାମ୍ ଫ୍ରିଡ଼ା କହିଲେ...

ହେ ପ୍ରଭୂ, ରାନ୍ଧିଲୁ, ବାଢ଼ିଲୁ, ପିଲା ଜନ୍ମର କଷ୍ଟ ସହିଲୁ, ଘରଟାରେ ପଥର ଭଳି ପଡ଼ିରହିଲୁ, ହେଲେ ଏତେ କଷ୍ଟ କଣ ସବୁ ଆମ ପାଇଁ? ପୁରୁଷ ମାନଙ୍କୁ କିଛି ଯନ୍ତ୍ରଣା ନାହିଁ, ତେଣୁ ସେମାନେ ଆମ କଷ୍ଟ ବୁଝିପାରୁନାହାନ୍ତି । ଏଣୁ ଆମ ଭଳି ତାଙ୍କୁ ମଧ୍ୟ କିଛି ଦାୟିତ୍ୱ ଦିଆଯାଉ ଯେଉଁଥିରେ ସେମାନେ ବୁଝିବେ ଯେ ଆମେ କେତେ ଦୁଃଖ କଷ୍ଟ ସହି ତାଙ୍କର ଘର ସଂସାରା ଠିଆ ରଖିଛୁ ।

ଏଇମିତି କଥା ଫଟାଫଟି ହେଲା ଏବଂ ପରିଶେଷରେ ଏହା ନିଶ୍ଚିତ ହେଲା ଯେ ମନୁଷ ମାନଙ୍କୁ ସାବାଡ଼ କରିବାପାଇଁ ସେମାନଙ୍କୁ ଗର୍ଭକଷ୍ଟ ସହିବାକୁ ପଡ଼ିବ ।

ବାସ୍ ସେହିଦିନଠାରୁ ନାରୀମାନେ ଗର୍ଭଧାରଣ କଲେ କିନ୍ତୁ ଗର୍ଭ କଷ୍ଟ ସହିବାକୁ ପଡ଼ିଲା ପୁରୁଷ ମାନଙ୍କୁ । ମେଟର୍ନିଟି ଛୁଟି ସହ ବଦଳାଗଲା ପାଟର୍ନିଟି ଛୁଟିକୁ । ଛୁଆଜନ୍ମ ସପ୍ତାହଟି ପାଇଁ ବାବୁମାନେ ଅଫିସରେ ଛୁଟି ଆବେଦନ କଲେ । ଡ଼ାକ୍ତରଙ୍କ ପରାମର୍ଶ ନେଇ ଗର୍ଭକଷ୍ଟ କମାଇବା ପାଇଁ ଔଷଧ ନେଇ ଘରେ ବସୁଥିଲେ ।

ଯେତେବେଳେ ନାରୀମାନେ ଛୁଆ ଜନ୍ମ କରନ୍ତି ବାବୁମାନଙ୍କୁ ସେହି ସମୟରେ କଷ୍ଟଭୀଷଣ ହୁଏ । ଗଳାଫଟା ଚିତ୍କାରରେ ସାହି କଂପିଯାଏ ।

ଠିକ୍ ଏହିଭଳି ହେବା ବେଳକୁ ମ୍ୟାଡ଼ାମ୍ ଫ୍ରିଡ଼ାଙ୍କ ସ୍ୱାମୀ ଅଫିସରେ ପ୍ୟାଟର୍ନିଟି

ଛୁଟି ଆବେଦନ କଲେ । ଔଷଧପତ୍ର ନେଇ ଘରକୁ ଗଲେ । ମ୍ୟାଡ଼ାମ୍ ଫ୍ରିଡ଼ାଙ୍କ ଛୁଆଜନ୍ମ ହେବା ବେଳ ପାଖେଇ ଆସୁଥାଏ । ଜେନିମେରୀ ବାବୁଙ୍କ ପାଖରେ ବସି ବୁଝାଉଥାନ୍ତି 'ଜମା ବ୍ୟସ୍ତ ହୁଅନ୍ତୁ ନାହିଁ' ସବୁ ଠିକ୍ ହୋଇଯିବ । କିନ୍ତୁ ଯନ୍ତ୍ରଣା କାହିଁ ? କିଛି ତ ଅନୁଭବ ହେଉନି ? କଥା କଣ ?

ଏହି ସମୟରେ ଧାଇମା ଆସି କହିଲେ ପୁଅଟିଏ ହୋଇଛି । ମ୍ୟାଡ଼ାମ୍ ଫ୍ରିଡ଼ାଙ୍କ ସ୍ୱାମୀ ଓ ଜେନିମେରୀ ଆଁ ଟା କରି ଅନାଇଲେ । ଏ ସବୁ କଣ ହେଉଛି? ଭଗବାନ ବ୍ୟବସ୍ଥାଟା ବଦଳାଇଦେଲେ ନା କଣ?

ମ୍ୟାଡ଼ାମ୍ ଫ୍ରିଡ଼ା ପିଲାକୁ ଧରି ସ୍ୱାମୀଙ୍କ କୋଠରୀକୁ ଚାଲିଆସିଲେ । ତିନି ହେଁ ଆଶ୍ଚର୍ଯ୍ୟ ହୋଇ ଜଣେ ଆର ଜଣକୁ ପ୍ରଶ୍ନବାଚୀ ଚକ୍ଷୁରେ ଦେଖୁଥିଲେ ।

ନେପଥ୍ୟରୁ ସର୍ଭେଣ୍ଟସ୍ କ୍ୱାର୍ଟରରୁ ଡ୍ରାଇଭରର ଗଳାଫଟା ଚିତ୍କାର ଭାସିଆସୁଥିଲା, 'ମରିଗଲି ଲୋ ବାପା ମା'...

ମ୍ୟାଡ଼ାମ୍ ଫ୍ରିଡ଼ାଙ୍କ୍ ମୁହଁରୁ ବାହାରି ପଡ଼ିଲା, ଓଃ ସିଟ୍...

---



# ପୁରୁଷ ଯଦି ସ୍ତ୍ରୀ ହୁଅନ୍ତେ

ଅକ୍ଷୟ କୁମାର ରାଉତ (ନୂଆଦିଲ୍ଲୀ)

ନାରୀ ହେଉଛି ସୃଷ୍ଟି-ସ୍ଥିତି ଓ ଶକ୍ତିର ପ୍ରାଣବନ୍ତ ପ୍ରତିମା । ନାରୀକୁ ବାଦ ଦେଇ ସୃଷ୍ଟିକୁ ପରିକଳ୍ପନା କରାଯାଇ ନ ପାରେ । ନାରୀ ପୁରୁଷ ମାନଙ୍କ ପାଇଁ ପ୍ରେରଣାର ଉତ୍ସ । ନାରୀ ଯୁଗେ ଯୁଗେ ପୂଜନୀୟା, ବନ୍ଦନୀୟା । ମହାତ୍ମା ଗାନ୍ଧୀଙ୍କ ମତରେ, 'Woman is the heart of the family, woman in the heart of the man, woman is the angel of the family. Woman is the flower of the life, woman is the incarnation of ahimsa ।' ଭାରତର ଇତିହାସ, ପୁରାଣ ଶାସ୍ତ୍ରଠୁ ଆରମ୍ଭ କରି, ଭାରତର ଜ୍ଞାନୀ, ଗୁଣୀ, ବିଜ୍ଞ ପଣ୍ଡିତମାନେ ସର୍ବଦା ନାରୀର ସ୍ତୁତିଗାନ କରି ଆସିଛନ୍ତି । ଏହା ନାରୀର ମହନୀୟତାକୁ ଦର୍ଶାଏ । ଅନ୍ୟପଟେ ପୁରୁଷର ଗୁଣଗାନ ନାମକୁ ମାତ୍ର ଦେଖିବାକୁ

ମିଳେ । ପୁରୁଷର ମହାନତା ନାରୀର ମହନୀୟତା ନିକଟରେ ବୋଧହୁଏ ଫିକା ପଡ଼ିଯାଇଛି । ଅଥବା ଏହା ପ୍ରକୃତି ଏବଂ ସୃଷ୍ଟିର ନିୟମ ହୋଇପାରେ ।

ପୁରୁଷ ଯଦି ନାରୀ ହୁଅନ୍ତା, ମାତୃତ୍ୱ ପାଇଁ ତାର ହୃଦୟ ମଧ୍ୟ ବିଳପି ଉଠିଥାନ୍ତା । କୁନି ପିଲାଟିକୁ ବୁକୁରେ ଚାପିଧରି ସେ ବି ଭୁଲିଯାଆନ୍ତା ନିଜର ଦୁଃଖ ଯନ୍ତ୍ରଣାକୁ । ତା'ର ମା' ଡ଼ାକରେ ସେ ଆତ୍ମହରା ହୋଇ ଉଠନ୍ତା । ରାତି ପାହାନ୍ତିରେ ଶାଶୁର ଡ଼ାକ ଶୁଣି ସେ ବି ଉଠି ପଡ଼ନ୍ତା, ଆଖି ମଳି ମଳି ହାତରେ ଝାଡ଼ୁ ଏବଂ ପବିତ୍ର ପାଣିଧରି ସେ ବି ଦାଣ୍ଡଟା ସଫା କରିବାରେ ଲାଗିପଡ଼ନ୍ତା, ତୁଳସୀ ଚଉଁରା ମୂଳରେ ସଂଜ ଦେଇ ସେ ବି ମଥା ଟେକନ୍ତା ତା ପରିବାର ପାଇଁ । ଜୁଡିଆ ଏବଂ ସାବିତ୍ରୀରେ ସେ ବି ବ୍ରତ ରଖନ୍ତା ତା' ସ୍ୱାମୀ ସନ୍ତାନ ପାଇଁ ।

ଆତଙ୍କବାଦୀ, ଅଣ୍ଡରଓ୍ୱାର୍ଲଡ୍ ଏବଂ ଭାଇଗିରି ଭଳି ଶବ୍ଦର କଳଙ୍କ ମଧ୍ୟ ତା ମଥାରୁ ହଟିଯାଆନ୍ତା । ଯୌତୁକ ଯାତ୍ନାରେ ସବୁବେଳେ ତା' ନାମଟା ଆଉ ଆସନ୍ତା ନାହିଁ । ଶାଶୁ ନଣନ୍ଦର ଟାହି ଟାପରା କଥାକୁ ସେ ବି ସହ୍ୟ କରନ୍ତାନି । ସ୍ୱାମୀ ସହିତ ସେ ଅଲଗା ରହିବା ପାଇଁ ଚାହିଁଥାନ୍ତା । ସ୍ୱାମୀ ସହିତ ଟିକେ ମନାନ୍ତର ହେଲେ ସେ ପହଞ୍ଚିଯାଇଥାନ୍ତା ମହିଳା ସଂଗଠନ ପାଖରେ ଅଭିଯୋଗ କରିବା ପାଇଁ, କିମ୍ବା ପୋଲିସ୍ ରେ ଅଭିଯୋଗ କରନ୍ତା । ଶାଶୁ, ନଣନ୍ଦ, ସ୍ୱାମୀ ତାକୁ କ୍ଷମା ମାଗନ୍ତେ ଆଉ ସେ ଫୁଲେଇ ରାଣୀ ପରି ଆରାମ୍ କରନ୍ତା ।

ସେ ବି ପୁରୁଷ ସହ କାନ୍ଧରେ କାନ୍ଧ ମିଶାଇ ଚାଲନ୍ତା । ପୁଅଙ୍କ ପରି ଚୁଟି କାଟି, ଜିନ୍ ପ୍ୟାଣ୍ଟ୍ ଏବଂ ଟି-ସାର୍ଟ୍ ପିନ୍ଧି ସେ ମଧ୍ୟ ସମାଜକୁ ଭ୍ରମିତ କରନ୍ତା ସେ ବି କ୍ଲବ୍ ପାର୍ଟି ଯାଆନ୍ତା । ବୟ ଫ୍ରେଣ୍ଡ୍ ମାନଙ୍କ ସହ ମିଶି ରଙ୍ଗୀନ ଦୁନିଆକୁ ଉପଭୋଗ କରନ୍ତା । ନିଜକୁ ରକ୍ଷା କରିବାପାଇଁ ଆବଶ୍ୟକ ପଡ଼ିଲେ ସେମାନଙ୍କୁ ସେ ଜେଲ୍ ମଧ୍ୟ ପଠାଇ ଦିଅନ୍ତା । ଏକୁଟିଆ ରାସ୍ତାରେ ଗଲାବେଳେ ତାକୁ ବି ଯୁବକ ମାନେ ଲିଫ୍ଟ୍ ଦେବାକୁ ଠିଆ ହୁଅନ୍ତେ । ମନ ପସନ୍ଦିଆ ଯୁବକ ସହିତ ଉଡ଼ିଯାଆନ୍ତା । ସେ ଫୁର୍ ହୋଇ । ଯଦି କେହି ଯୁବକ ତା ସହ ଅଭଦ୍ରୋଚିତ୍ ବ୍ୟବହାର କରେ ତେବେ ସେ ଯୋର ସ୍ୱରରେ ହାଲ୍ଲା କରିଥାନ୍ତା । ତା ସ୍ୱର ଶୁଣି ଯୁବକ, ବୃଦ୍ଧ ଏକତ୍ର ହୋଇଯାଆନ୍ତେ, ଯୁବକର କୌଣସି କଥା ନ ଶୁଣି ସେମାନେ ଆରମ୍ଭ କରିଦିଅନ୍ତେ ଉତ୍ତମ ମଧ୍ୟମ । ଆଉ ସେ ମୁରୁକି ହସା ମାରନ୍ତା । ପୁରୁଷ ମାନଙ୍କ ନାରୀ ଭକ୍ତି ଦେଖି । ଇଚ୍ଛା ନଥିଲେ ମଧ୍ୟ ପରିବାର ବନ୍ଧୁବାନ୍ଧବଙ୍କ

ବାଧ୍ୟବାଧକତା ସ୍ୱରୂପ ସେ ମା' ହେବାକୁ ରାଜି ହୋଇଥାନ୍ତା । କାରଣ ପିଲାକୁ ଜନ୍ମ ଦେଇ ସେ ନିଜର ସୌନ୍ଦର୍ଯ୍ୟକୁ ନଷ୍ଟ କରିପାରନ୍ତା ନାହିଁ । ମଥାରେ ସିନ୍ଦୁର ଟୋପା ଦେଇ ସେ ଦେଶ ଦୁନିଆକୁ ମ୍ୟାରେଜ୍ ସାର୍ଟିଫିକେଟ୍ ଦେଖାଇବାକୁ ଚାହେଁନି । ସେ ଭାରତର ଭଣ୍ଡବାବା ମାନଙ୍କର ଶିଷ୍ୟା ସାଜିବ, ବାବାଙ୍କର ଆଶୀର୍ବାଦ ପାଇବା ପାଇଁ ସେ ଶଯ୍ୟା ସଙ୍ଗିନୀ ମଧ୍ୟ ସାଜିବ । ସମୟ ପଡ଼ିଲେ ବିନା ବିବାହରେ ସେ ମାତୃତ୍ୱ ପାଇବାକୁ ଚେଷ୍ଟା କରିବ । ଦୈହିକ ସୁଖ ଏବଂ ଅର୍ଥ ପାଇବା ପାଇଁ ସେ ବି ନିଜର ନଗ୍ନ ଶରୀରକୁ ଇଣ୍ଟର୍ନେଟ୍‌ରେ ଅପଲୋଡ଼ କରି ଏକ ନୁଆ ଡ଼ଟ୍ କମ୍ ଆରମ୍ଭ କର୍ହିବ ।

ସେ ବି ଲେଖିବ ନୂଆ ଇତିହାସ, ସେ ବି ହେବ ଦେଶର ରାଷ୍ଟ୍ରପତି, ପ୍ରଧାନମନ୍ତ୍ରୀ, ସେ ବି ହେବ ଶାସକ ଏବଂ ବିରୋଧୀ ଦଳର ନେତ୍ରୀ । ନିଜର ତ୍ୟାଗ ବଳିଦାନର ସେ ବି ଗଢ଼ିବ ଏକ ଣୂଆ ସଂସାର । ଯେଉଁଠି ଥିବ ସ୍ନେହ ପ୍ରେମ ଓ ମମତାର ବନ୍ଧନ । ସ୍ୱାମୀ ଶାଶୁ ଏବଂ ପରିବାର ସେବାରେ ସେ ନିଜକୁ ହଜାଇ ଦେବ । ସନ୍ତାନର ସୁଖ ପାଇଂ ସେ ନିଜକୁ ଜଳାଞ୍ଜଳୀ ଦେବ । ଅନ୍ୟାୟ ଅତ୍ୟାଚାର ବିରୁଦ୍ଧରେ ସେ ବି ଠିଆହେବ ରାଣୀ ଲକ୍ଷ୍ମୀବାଇଙ୍କ ପରେ । ଦେବଦାସୀ ସାଜି ନିଜକୁ ହଜାଇ ଦିଅନ୍ତା, କାଳିଆ ସେବାରେ ।

ନାରୀ ଏବଂ ପୁରୁଷ ଗୋଟିଏ ମୁଦ୍ରାର ଦୁଇଟି ପାର୍ଶ୍ୱ ପରି । ନାରୀ ବିନା ପୁରୁଷ ଜୀବନର ଅର୍ଥ କିଛି ହୁଏନା । ସେମିତି ପୁରୁଷ ବିନା ନାରୀ ଜୀବନର ଅସ୍ତିତ୍ୱ କିଛି ନାହିଁ । ଆଜିର ନାରୀ ମହନୀୟତା, ତ୍ୟାଗ, ବଳିଦାନର ଅର୍ଥ କିଛି ବୁଝେନା । ତ୍ୟାଗ ଏବଂ ବଳିଦାନ କ୍ଷେତ୍ରରେ ପୁରୁଷ ନାରୀଠାରୁ ଦୁଇପାଦ ଆଗରେ କହିଲେ କିଛି ଭୁଲ ହେବନି । ଆଧୁନିକ୍ ସମାଜରେ ନାରୀ ପୁରୁଷଠାରୁ ଭିନ୍ନ କେବଳ ପ୍ରଜନନ କ୍ଷେତ୍ରରେ । ଯଦି ପୁରୁଷର ପ୍ରଜନନ କ୍ଷମତା ଥାଆନ୍ତା, ତେବେ ହୁଏତ ପୁରୁଷ ନାରୀଠାରୁ ଅଧିକ ପୂଜାର ପାତ୍ର ହୋଇପାରନ୍ତା । ଯଦିଓ ପୃଥିବୀର ସର୍ବପ୍ରଥମ ପୁରୁଷ ମା Thomas Beattie ଏହାକୁ ସମ୍ଭବ କରି ଦେଖାଇଛନ୍ତି, ହେଲେ ଏହା ସବୁ ପୁରୁଷଙ୍କ ପକ୍ଷେ ସମ୍ଭବ ନୁହେଁ ।

ପୁରୁଷ ପୁରୁଷ ବିବାହ ଏବଂ ନାରୀ ନାରୀ ବିବାହକୁ ଆଇନ୍ ସ୍ୱୀକୃତି ଦେଇଥିଲେ ସୁଧା ତାହା ଅପ୍ରାକୃତିକ, ଏବଂ ପାଶବିକ ପ୍ରକୃତିର ବାସ୍ତବ ରୂପରେଖ । ପ୍ରକୃତିର ନିୟମ ବିରୁଦ୍ଧର ଚିନ୍ତନ ।

ଈଶ୍ୱରଙ୍କ ସୃଷ୍ଟି ହେଉଛି ସତ୍ୟ ଶିବ ସୁନ୍ଦର... ।







# ଯଦି ପୁରୁଷ ସତରେ ସ୍ତ୍ରୀ ହୁଅନ୍ତେ

ଡ଼ା ଜ୍ୟୋତି ପ୍ରସାଦ ପଟ୍ଟନାୟକ

ଏଠାରେ ଚିନ୍ତା କରିବାର ରହିଛି ଖୁବ୍ ବଢ଼ିଆ ଉପାଦାନ । ମନେ କରନ୍ତୁ ହଠାତ୍ ଦିନେ ସବୁ ପୁରୁଷ ସ୍ତ୍ରୀ ହୋଇଯାଆନ୍ତେ, ତେବେ କଣ ହୁଅନ୍ତା...!!!

ସନ୍ଧ୍ୟାରେ ଟିଭିରେ ସମାଚାର ଦେଖିଲା ବେଳେ ସମାଚାର ଉଦଘୋଷକ / ଉଦଘୋଷିକା ସମ୍ବାଦ ଏମିତି ପଢ଼ନ୍ତେ ...

ଆଜି ଦିଲ୍ଲୀଠାରେ ଆୟୋଜିତ ପିତୃତ୍ୱ ଓ ଶିଶୁସ୍ୱାସ୍ଥ୍ୟ ଶିବିର କୁ ଉଦ୍‌ଘାଟନ କରି ପ୍ରଧାନମନ୍ତ୍ରୀ ଶ୍ରୀମତୀ ମନମୋହନ ସିଂହ କହିଥିଲେ ଯେ ପ୍ରତ୍ୟେକ ପିତାଙ୍କ ସ୍ୱାସ୍ଥ୍ୟ ଅତ୍ୟନ୍ତ ଜରୂରୀ । ଏହି ଅବସରରେ ଉପସ୍ଥିତ ୟୁପିଏ ଅଧ୍ୟକ୍ଷା ଶ୍ରୀଯୁକ୍ତ ସୋନିଆ ଗାନ୍ଧୀ ମଧ୍ୟ ଅନୁରୁପ ମନ୍ତବ୍ୟ ଦେଇଥିଲେ ।

ଆଜି ସଡ଼କ ଦୁର୍ଘଟଣାରେ ବଲିଉଡ୍‌ର ସୁପର୍‌ଷ୍ଟାର ଶ୍ରୀମତି ଶାହରୁଖ୍ ଖାନ୍ ହୋଇଛନ୍ତି, ଶ୍ରୀଯୁକ୍ତ ଗୌରୀ ଖାନ୍ ସାମାନ୍ୟ ଆହତ ହୋଇଛନ୍ତି ।

ଆସନ୍ତା କାଲି ପାର୍ଲ୍ୟାମେଣ୍ଟର ଶୀତକାଳୀନ ଅଧିବେସନ ପାଇଁ ଶ୍ରୀମତି ପ୍ରଣବ ମୁଖାର୍ଜୀ, ଶ୍ରୀମତି ପି ଚିଦାମ୍ବରମ ପ୍ରମୁଖ ଦିଲ୍ଲୀ ରେ ପହଞ୍ଚିଛନ୍ତି, ଶ୍ରୀଯୁକ୍ତ ମାୟାବତୀ, ଶ୍ରୀ ଯୁକ୍ତ ଜୟଲଳିତା, ଶ୍ରୀଯୁକ୍ତ ମମତା ବାନାର୍ଜୀ ମଧ୍ୟ ଉପସ୍ଥିତ ଅଛନ୍ତି ।

ଅବଶ୍ୟ ଏହା ମାତ୍ର ସଂଜ୍ଞା ପରିବର୍ତ୍ତନ ହୋଇଛି । ସତରେ ସେମିତି କିଛି ପରିବର୍ତ୍ତନ ହେଲାପରି ଲାଗୁନି, ଦେଖିବା ଚାଲ ଯଦି ଲିଙ୍ଗଗତ ପରିବର୍ତ୍ତନ ଓ ବିଭେଦକୁ ପ୍ରାଧାନ୍ୟ ଦିଆଯାଏ, ତେବେ କଣ ହେବ ।

ସମ୍ବାଦ ସବୁ ଏମିତି ପଢ଼ିବାକୁ ମିଳିବ ।

ଆଜି କଟକ କଲେଜ ଛକରେ ଦୁଇଜଣ ଉଦ୍‌ଭ୍ରାନ୍ତ ଝିଅ ଜଣେ ପୁଅ ଉପରେ ଆକ୍ରମଣ କରିଛନ୍ତି । ସଂପୃକ୍ତ ଯୁବକ ଥାନାରେ ଲିଖିତ ଅଭିଯୋଗ କରିକହିଛନ୍ତି ଯେ ଝିଅ ଦୁଇଜଣ ତାଙ୍କର ପୁରୁଷତ୍ୱକୁ ଲୁଟି ନେଇଛନ୍ତି ।

ଭୁବନେଶ୍ୱର ବିଗ୍ ବଜାରଠାରେ ପୁଅ ମାନଙ୍କୁ ଯୌନ ନିର୍ଯାତନା ଦେଉଥିବା ଅଭିଯୋଗରେ ଚାରିଜଣ ଝିଅଙ୍କୁ ଗିରଫ୍ କରାଯାଇଛି ।

ତମାଣ୍ଡୋ ହାଉସିଂ କଲୋନୀରେ ପୁଣି ଏକ ବରହତ୍ୟା ମାମଲା ସାମନା କୁ ଆସିଛି । ବରପିତା ଦାବୀ କରିଛନ୍ତି ଯେ ତାଙ୍କ ପୁତ୍ରକୁ ଯୌତୁକ ନିର୍ଯ୍ୟାତନା ଦିଆଯାଇ ହତ୍ୟା

କରାଯାଇଛି ।

ସତରେ ଯଦି ସ୍ତ୍ରୀ ମାନେ ପୁରୁଷ ହୋଇଯାଆନ୍ତେ, ତେବେ କଲେଜ ଛକରେ, ସିନେମା ହଲ୍ ସାମନାରେ ସେମାନେ ପୁରୁଷ ମାନଙ୍କୁ ଲାଇନ୍ ମାରିବା ଆରମ୍ଭ କରିବେ । ସ୍ଥାନେ ସ୍ଥାନେ ପୁରୁଷ ମାନଙ୍କ ଶରୀରକୁ ଛୁଇଁ ସେମାନଙ୍କୁ ଶାରିରୀକ ନିର୍ଯ୍ୟାତନା ଦେବେ । ପୁରୁଷ ମାନେ ଶାଢୀ ଚୁଡ଼ିଦାର୍ ଆଉ ଚୁନ୍ନୀ ପିନ୍ଧି ସହର ବଜାରକୁ ଯିବେ, ଝିଅମାନେ ଜିନ୍ ପ୍ୟାଣ୍ଟ୍ ଆଉ ଟି-ସାର୍ଟ୍ ପିନ୍ଧି ପାଟିରେ ସିଗାରେଟ୍ ଲଗାଇ ରାସ୍ତାରେ ସଞ୍ଚିତ ହୋଇ ଯାଉଥିବା ପୁରୁଷ ମାନଙ୍କୁ ଅଶ୍ଳୀଳ ଇଙ୍ଗିତ କରିବେ । କମେଣ୍ଟ୍ ମାରିବେ ।

ଘରୁ ବାହାରକୁ ଯିବାବେଳେ ପୁଅ ମାନେ ମାଆ ମାନଙ୍କର ଅନୁମତି ନେଇ ଝିଅଙ୍କ ତତ୍ତ୍ୱାବଧାନରେ କଲେଜ ଯିବେ । ସହର ଗଳିରେ ପୁଅ ମାନଙ୍କ ପାଇଁ ପାର୍ଲର୍ ସବୁ ଖୋଲିବ । ପ୍ରେମରେ ପଡ଼ିଥିବା ପୁଅମାନେ ଝିଅମାନଙ୍କ ଠାରୁ ଗିଫ୍ଟ୍ ଦାବୀ କରିବେ । ଫେସ୍‌ବୁକ୍‌ରେ ଜଣେ ପୁଅ ସଦସ୍ୟ ହେଲେ ତାକୁ ନିଜ ଫ୍ରେଣ୍ଡ୍ ଲିଷ୍ଟରେ ରଖିବା ପାଇଁ ଅସଂଖ୍ୟ ରିକ୍ୱେଷ୍ଟ୍ ଆସିବ । ସମସ୍ତେ ତା ସହ କଥା ହେବାପାଇଁ ଚେଷ୍ଟା କରିବେ । ପୁଅ ମାନଙ୍କ ମୋବାଇଲ୍ ପାଇଁ ଆଉ ରିଚାର୍ଜ୍ ଚିନ୍ତା ରହିବ ନାହିଁ । ତାକୁ ପ୍ରେମ ପ୍ରସ୍ତାବ ଦେଉଥିବା ଝିଅମାନେ ତା ମୋବାଇଲ୍ ରିଚାର୍ଜ୍ କରିଦେବେ ।

ବିବାହ ସମୟରେ ଝିଅମାନେ ପୁଅଘରକୁ ଆସି ପୁଅକୁ ପରଖିବେ । ବିବାହ ପୁର୍ବରୁ ଯଦି କୌଣସି ଅନୈତିକ ସଂପର୍କ ଥିବା ଜଣାପଡ଼ିବ ସେ ପୁଅକୁ କେହି ବିବାହ୍ କରିବେ ନାହିଁ । ପୁଅମାନେ ଥାଳିରେ ଚା ଆଉ ମିଠା ନେଇ ଝିଅ ସମ୍ମୁଖକୁ ଆସିବେ । ଝିଅମାନେ ପୁଅ ମାନଙ୍କର ଇଣ୍ଟରଭ୍ୟୁ ନେବେ । ଯେଉଁ ପୁଅ ସର୍ବାଧିକ ସୁଗୁଣର ଅଧିକାରୀ ହୋଇଥିବ ତାକୁ ବିବାହ ଯୋଗ୍ୟ ଘୋଷିତ କରାଯିବ । ବିବାହ ସମୟରେ ପୁଅଘର ତରଫରୁ ଯୌତୁକ ଦେବେ । ଏବଂ ସେ ନିଜ ଘର ଛାଡ଼ି ଝିଅ ଘରେ ଯାଇ ରହିବ ।

ଚାକିରୀ କରିବା କଥା କହିଲେ, ପତ୍ନୀ ମାନେ ନିର୍ଯ୍ୟାତନା ଦେବେ । ବିବାହ ପରେ ଘରେ ବସି ରହିବାକୁ ନିର୍ଦ୍ଦେଶ ଦେବେ । ଘର କାମ କରି କରି ଦ୍ୱିପହରରେ ଟିଭିରେ ଶଶୁର ଜ୍ୱାଇଁ ସିରିଅଲ୍ ସବୁ ଦେଖିବାକୁ ବାଧ୍ୟ ହେବ ସେ । ସରକାର ପୁରୁଷ ସଶକ୍ତିକରଣ ନାମରେ ବିଭିନ୍ନ କାର୍ଯ୍ୟକ୍ରମ କରିବେ । ଟିଭି ଆଉ ରେଡ଼ିଓ ରେ ପୁରୁଷମହଲ୍ କାର୍ଯ୍ୟକ୍ରମ ମାନ ପ୍ରସାରିତ ହେବ । ବିଭିନ୍ନ ୟୁନିଭର୍ସିଟିରେ ପୁରୁଷ ବିଭାଗ ରହିବ । ସେଠାରେ ପୁରୁଷ ମାନଙ୍କ ଉପରେ ଅତ୍ୟନ୍ତ ଉଚ୍ଚ କୋଟୀର ରିସର୍ଚ୍ଚ ସବୁ କରାଯିବ । ପୁରୁଷ ମାନଙ୍କୁ ନିର୍ଯ୍ୟାତନାରୁ କିପରି ମୁକ୍ତ କରାଯିବ ସେଥି ପାଇଁ ରାଷ୍ଟ୍ରୀୟ ସ୍ତରରେ କାର୍ଯ୍ୟଶାଳା ସବୁ ଆୟୋଜନ କରାଯିବ ।

ଅପରାହ୍ନରେ ପଡ଼ୋଶୀଘରର ପୁରୁଷମାନେ ଏକାଠି ବସି ଆଲୋଚନା କରିବେ। ସନ୍ଧ୍ୟା ନ ହେଉଣୁ ପତ୍ନୀମାନଙ୍କ ପାଇଁ ରୋଷେଇ କରି ଅପେକ୍ଷା କରି ରହିବେ। ରାତିରେ ନିଜ ସ୍ତ୍ରୀଙ୍କ ହାତପାଦକୁ ଘଷିମୋଡ଼ି ଦେବେ। ସାବିତ୍ରୀ ବ୍ରତ ପରି ସତ୍ୟବାନ ବ୍ରତର ଚଳନ ହେବ, ନିଜ ପତ୍ନୀଙ୍କ ଦୀର୍ଘାୟୁ ର କାମନା କରି ସବୁ ପତିମାନେ ଏହି ବ୍ରତ କରିବେ। ଏକାଦଶୀ ଉପବାସ ସବୁ କରି ନିଜ ପତ୍ନୀ ଆଉ ପୁତ୍ର କନ୍ୟାର ସୁନ୍ଦର ସ୍ୱାସ୍ଥ୍ୟର କାମନା କରିବେ।

କେହି କେହି ପୁରୁଷ ନିଜ ସ୍ତ୍ରୀଙ୍କୁ ଧମକାଇ ନିଜ ଅକ୍ତିଆରରେ ରଖିବାକୁ ଚେଷ୍ଟା କରିପାରନ୍ତି, ସେପରି କ୍ଷେତ୍ରରେ ସଂପୃକ୍ତ ମହିଳାଙ୍କୁ ଅନ୍ୟମାନେ ପତିଭକ୍ତା ବୋଲି କହି ଚିଡ଼ାଇବେ। 'ଜୋରୁ କା ଗୁଲାମ୍' ପରି 'ପତି କା ଗୁଲାମ୍' ଏକ ଲଜ୍ଜାଜନକ ଶବ୍ଦ ବୋଲି ଧରି ନିଆଯିବ।

ସ୍ୱାମୀ ମାନେ ନିଜକୁ ସବୁବେଳେ ସଜାଇ ରଖିବେ। ଘରେ ପତ୍ନୀଙ୍କ ଆସିବା ପୂର୍ବରୁ ନିଜକୁ ସୁନ୍ଦର ଭାବରେ ସଜାଇ ରଖି ଅପେକ୍ଷା କରିବେ। ସଂଧ୍ୟାରେ ପତ୍ନୀ ଆସିବା ପରେ ବଜାର ବୁଲାଇ ନେବାପାଇଁ ନିଜ ପତ୍ନୀଙ୍କୁ ସେମାନେ ନେହୁରା ହୋଇ କହିବେ। କେହି କେହି ଉଦାର ହୃଦୟା ପତ୍ନୀ ନିଜ ପତିକୁ ନେଇ ବଜାର ବୁଲାଇ ନେବେ, ଆଉ କେହି କେହି ରୋକଠୋକ୍ କହିଦେବେ, 'ବେଶୀ ବଜାରାବୁଲା ହେଲଣି ଦେଖୁଛି, ଘରେ ରହିବା ତୁମ ବାପା ଶିଖାଇ ନାହାନ୍ତି ?'

ରାତିରେ ନିଜ ପତ୍ନୀଙ୍କ ଶଯ୍ୟାସାଙ୍ଗ ହୋଇ ସ୍ୱାମୀ ମାନେ ନିଜ ପତ୍ନୀଙ୍କୁ ନିଜ ଅକ୍ତିଆରରେ ରଖିପାରୁଥିବା କଥା ଭାବି ଗର୍ବ ଅନୁଭବ କରିବେ। ମୋ ଛଡ଼ା ଦ୍ୱିତୀୟ ପୁରୁଷକୁ ମୋ ପତ୍ନୀ ଦେଖନ୍ତି ନାହିଁ ବୋଲି ମନେ ମନେ ଚିନ୍ତା କରିବେ। ଅଫିସ ମାନଙ୍କରେ ମହିଳା ମାନେ ସବୁ ଉଚ୍ଚ ପଦବୀରେ ରହିବେ, ସେମାନଙ୍କ ସେବାପାଇଁ ପୁରୁଷ ସେକ୍ରେଟାରୀ ମାନେ ରହିବେ।

ସତରେ ଯଦି ଏହି ପ୍ରକାରର ପରିବର୍ତ୍ତନ ହୁଅନ୍ତା, କଣ ଭଲ ବା ମନ୍ଦ ହୁଅନ୍ତା ତାହା ତ ଜାଣେନି କିନ୍ତୁ ସତ କିଛି ସମୟ ପାଇଁ ଆମେ ସବୁ ପାଗଳଖାନାରେ ଯାଇ ନିଜେ ନିଜେ ଆଡ଼ମିଟ୍ ହୋଇଯାଇ ଚିକିତ୍ସା କରାଇଥାନ୍ତୁ।

ଏହି ପତ୍ରିକାରେ ପ୍ରକାଶିତ ସମସ୍ତ ଲେଖାର ଲେଖକ ଲେଖିକା ମାନେ ପ୍ରତିଷ୍ଠିତ ଲେଖକ ଲେଖିକା ଗୋଷ୍ଠୀ ଅନ୍ତର୍ଭୂକ୍ତ ନ ହୋଇ ପାରନ୍ତି, ତେଣୁ ସେମାନଙ୍କ ଲେଖାରେ ବ୍ୟାକରଣ ଗତ ଭୂଲ ଭଟକା ଥାଇପାରେ, ସେ ସବୁକୁ ଅଣଦେଖା କରି ପତ୍ରିକାକୁ ପଢ଼ିବା ପାଇଁ ଆମ ଅନୁରୋଧ...

ପତ୍ରିକାର ସମ୍ପାଦକ / ପ୍ରକାଶକ ପେଷାରେ ଓଡ଼ିଆ ସାହିତ୍ୟ ସହିତ ସଂଶ୍ଲିଷ୍ଟ ନୁହନ୍ତି, ତେଣୁ ସଂପୂର୍ଣ୍ଣ ନିର୍ଭୂଲ ଓଡ଼ିଆ ପରିବେଷଣ କରିବାର ପ୍ରଚେଷ୍ଟା ମାତ୍ର କରୁଛି, ଧନ୍ୟବାଦ




ଚଳିତ ମାସର ସଂସ୍କରଣକୁ ଡ଼ାଉନଲୋଡ୍ କରି ପଢ଼ିଥିବା ହେତୁ ଆପଣଙ୍କୁ ଧନ୍ୟବାଦ ।

ଏହି ଇ-ପତ୍ରିକା ବିଷୟରେ ଆପଣଙ୍କ ମତାମତ ଆପଣ ଆମ ଇ-ମେଲ୍ ଠିକଣା aahwaan@gmail.com ରେ ଦେଇ ପାରିବେ କିମ୍ବା ଫେସ୍‌ବୁକରେ ଥିବା ଆମ ଗ୍ରୁପରେ ଦେଇ ପାରିବେ ।